# ଜଙ୍ଗଲର ଡାକ



ମୂଳ ରଚନା : ଜ୍ୟାକ୍ ଲଣ୍ଡନ୍

ମର୍ମାନୁବାଦ : ବାଣୀ [illegible]

Digitized by srujanika@gmail.com

# ଜଙ୍ଗଲର ଡାକ

ମୂଳଲେଖା

ଜ୍ୟାକ୍ ଲଣ୍ଡନ୍

ସଂକ୍ଷିପ୍ତ ମର୍ମାନୁବାଦ

ଦାଶ ବେନହୁର



Digitized by srujanika@gmail.com

ପ୍ରକାଶକ : ଭାରତ ଭାରତୀ, ସୂତାହାଟ, କଟକ - ୭୫୩ ୦୦୧

ଅକ୍ଷରସଜ୍ଜା : ପ୍ରିଣ୍ଟେକ୍ ଭିଜନ୍, ଶହୀଦ ନଗର, ଭୁବନେଶ୍ୱର - ୭୫୧ ୦୦୭

ପ୍ରକାଶକାଳ : ୧୯୯୮

ପ୍ରଚ୍ଛଦ ସୁଧାକର ବିଶ୍ୱାଳ

ମୁଦ୍ରଣ : ପେଣ୍ଟାକଲ୍ ପ୍ରିଣ୍ଟର୍ସ, ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧ ୦୧୨

ମୂଲ୍ୟ : ଷାଠିଏ ଟଙ୍କା

WRITTEN BY JACK LONDON

ABRIDGED & TRANSLATED BY **DASH BENHUR**

PUBLISHED BY BHARAT BHARATI SUTAHAT, CUTTACK – 753001

YEAR OF PUBLICATION 1998

PRICE Rupees Sixty only

ISBN 81 - 86550-32-1

*Digitized by srujanika@gmail.com*

ମିଷ୍ଟର୍ ମିଲର୍ ନାମରେ ଜଣେ ବିଚାରପତି ଥାଆନ୍ତି । ଆମେରିକାର କାଲିଫର୍ଣିଆ ସହରରେ ତାଙ୍କର ଗୋଟିଏ ବିରାଟ ଓ ସୁନ୍ଦର ଘର ଥାଏ । ଘର ଚାରିପଟେ କେତେ ନା କେତେ ଗଛ ପତ୍ର, ବାଡ଼ି ବଗିଚା । ସକାଳେ ସଞ୍ଜେ, ସେ ତାଙ୍କ ପୋଷା କୁକୁରକୁ ଧରି ବଗିଚାରେ ବୁଲନ୍ତି । ଏଡ଼େ ବଡ଼ କୁକୁର । ଦେଖିବାକୁ ବାଘପରି ଭୟଙ୍କର । ହେଲେ ମିଲର୍‌ଙ୍କ ପାଖରେ ସୁନା ପିଲାଟିଏପରି ସେ ଚୁପ୍‌ଚାପ୍ ଥାଏ ।

ସେଇ କୁକୁର ନା ''ବକ୍'' ।

ଦିନେ ସକାଳୁ ମିଲର୍ ବକ୍‌କୁ ଧରି ବୁଲିଯିବାପାଇଁ ଉଠି ପଡ଼ିଲେ । ସୂର୍ଯ୍ୟ ଉଇଁ ନ ଥାନ୍ତି । ସୁଲୁସୁଲୁ ପବନ ବୋହୁଥାଏ ।

ସବୁଦିନେ ''ବକ୍''କୁ ଦେଖିବା ମାତ୍ରେ ମିଲର କୁହନ୍ତି ଶୁଭ ସକାଳ ବକ୍ ! ତା'ପରେ ଦେହରେ ହାତ ବୁଲାଇ ଟିକେ ଥାପୁଡ଼େଇ ଦିଅନ୍ତି ସେ । ଗେଲ ବଦଳରେ ବକ୍ ମିଲର୍‌ଙ୍କ ପାଖରେ କୁଁ କୁଁ ହୁଏ । ମନେ ହୁଏ ବିଚାରପତି ମିଲର୍‌ଙ୍କର ସେ ଯେମିତି ଅତି ଆପଣାର ପୁରୁଣା ବନ୍ଧୁ ।

ବକ୍ ରହିବାପାଇଁ ଛୋଟ ଘରଟିଏ ତିଆରି ହୋଇଥାଏ । ସେଦିନ, କବାଟ ଫିଟାଇ ବକ୍‌କୁ ଦେଖୁ ଦେଖୁ ମିଲର୍ କହିଲେ - ''କ'ଣ ବେଟା, ସବୁ ଭଲ ତ ?'' ଉତ୍ତରରେ ବକ୍ ତା'ର ବିରାଟ ବାଘୁଆ ମୁଣ୍ଡଟାକୁ ଉପରକୁ ଟେକି ଲାଞ୍ଜ ହଲାଇବାରେ ଲାଗିଲା । ଖୁସିରେ ତା' ଦେହର ଲମ୍ବା ଲମ୍ବା ପାଉଁଶିଆ ରୁମମାନ ଫୁଲି ଯାଉଥାଏ ମିଲର୍‌କୁ ଦେଖି । ଦେଢ଼ଶହ ପାଉଣ୍ଡ ଓଜନର ବିଶାଳ ଦେହଟା ତା'ର ଦେଖିବାକୁ ସତରେ ଖୁବ୍ ଚମତ୍କାର ।

ବକ୍‌ର ବାପ ଥିଲା ଗୋଟେ ବିଶାଳକାୟ ସେଣ୍ଟବର୍ଣ୍ଣାଡ଼୍ କୁକୁର । ଆଉ ମା ହେଉଛି ଲମ୍ବା ମୁହଁଥିବା ସ୍କଟ୍‌ଲାଣ୍ଡର ମେଣ୍ଢାଜଗାଳି କୁକୁର ଜାତିର । ବାପା ମାଙ୍କର ଗୁଣ ନେଇ,



Digitized by srujanika@gmail.com




ମିଷ୍ଟର ମିଲର୍ ଓ ବକ୍



Digitized by srujanika@gmail.com

ବକ୍ ଏମିତି ବିରାଟ ଏବଂ ହେଟାବାଘପରି ଭୟଙ୍କର ଦିଶେ । ତା'ର ରାଗୁଆ ମୁହଁ ଦେଖିଲେ ଯେ କେହି ଭୟରେ କାଠ ପାଲଟି ଯିବ । ମୁଣ୍ଡ ଏବଂ ନାକପାଖରେ ଚକଡ଼ାଏ ମାଟିଆ ରଙ୍ଗ ତାକୁ ବେଶ୍ ମାନେ । ଛାତିଟା ଧୋବ ଫରଫର ।

ସେଦିନ ମିଲର୍ ବକ୍‌କୁ ଧରି ବୁଲି ବାହାରିଲେ । ପ୍ରଥମେ ଘୋଡ଼ାଶାଳକୁ ଯାଇ ସେମାନେ ଠିକ୍‌ଠାକ୍ ଅଛନ୍ତି କି ନାହିଁ ତଦାରଖ କଲେ । ତା' ପରେ ଅନ୍ୟ କୁକୁର ରହୁଥିବା ଜାଗା ବୁଲି ଦେଖିଲେ । ସବୁ ପଶୁମାନେ ବକ୍‌କୁ ଚାହୁଁଥା'ନ୍ତି । ବକ୍‌ର କି ମଜା ସତେ ! ମାଲିକଙ୍କ ସହ ସେ କେଡ଼େ ଖୁସିରେ ବୁଲୁଚି ସକାଳୁ ସକାଳୁ ! ବାଡ଼ିପଟ ପୋଖରୀରେ ମିଲର୍‌ଙ୍କର ଦୁଇ ପୁଅ ପହଁରୁଥିଲେ । ସକାଳୁ ପହଁରିଲେ ଦେହର ବ୍ୟାୟାମ ହୁଏ, ପୁଣି ଶରୀର ତାଜା ରହେ । ବାପାଙ୍କ ସାଙ୍ଗରେ ବକ୍‌କୁ ଦେଖୁ ଦେଖୁ ସେମାନେ ତାକୁ ପାଣିରେ ଆସି ପହଁରିବାକୁ ଡାକିଲେ । ହେଲେ ବକ୍ ଶୁଣନ୍ତା କାହିଁକି ? ସେ ତା' ମାଲିକଙ୍କ ସାଙ୍ଗରେ ଏଡ଼େ ମଉଜରେ ବୁଲୁଚି, ପାଣିରେ ଏଇଲେ ପଶିବ କୋଉ ଗରଜରେ ?

ମିଷ୍ଟର୍ ମିଲର ଓ ବକ୍ ଏଇମିତି ଚାଲଚାଲ ହୋଇ ଗଲେ ବଗିଚାର ଶେଷ ମୁଣ୍ଡଯାଏଁ । ଶରତ ଋତୁର ସମୟ । ଚାରିଆଡ଼େ କେତେ ଫୁଲ ଫୁଟିଛି । ଦୁହେଁ କିଛି ସମୟ ଅଟକି ରହି ଶରତ ଋତୁର ପ୍ରାକୃତିକ ଶୋଭା ଉପଭୋଗ କଲେ ।

ସେତିକିବେଳେ ବଗିଚାର ମାଳି ଗୋଟିଏ ଫୁଲଗଛ ପଟାଳିରେ ବସି କ'ଣ କାମ କରୁଥିଲା । ତା'ର ନାଁ ମାନୁଏଲ । ବକ୍‌କୁ ଦେଖି ସେ ମନକୁ ମନ ହସିଲା । ସେ ହସରେ ଯେମିତି ଭରି ରହିଥିଲା ଏକ ଗୋପନ ରହସ୍ୟ ।

କେବଳ ମାନୁଏଲ ଜାଣିଥିଲା ଯେ ବକ୍‌ର ଏଇ ବଗିଚାରେ ଏମିତି ସକାଳ-ବୁଲା ଆଜିଠାରୁ ହିଁ ଶେଷ । ବକ୍ କିନ୍ତୁ ଏ ବିଷୟରେ ଟିକିଏ ବି ସୁରାକ୍ ପାଇ ନ ଥିଲା । ମିଷ୍ଟର୍ ମିଲର୍ ମଧ୍ୟ ସେଭଳି ଘଟିବ ବୋଲି ମୋଟେ କିଛି ଜାଣି ନ ଥିଲେ ।

ଖରାବେଳର ଖିଆପିଆ ସରିଲା । ଘରେ ଜଳୁଥିବା ନିଆଁ ପାଖରେ ବସି ମିଲର ଉଷୁମ ଟାଣୁଥାଆନ୍ତି । ସେତିକିବେଳେ ବକ୍ ତାଙ୍କ ଗୋଡ଼ ପାଖରେ ଶୋଇ ନିଆଁ ଆଡକୁ ଚାହିଁ ରହିଥାଏ । ଜଣେ ମଣିଷ ଆଉ ଜଣେ ମଣିଷକୁ କହିଲା ଭଳି ମିଲର୍ ବକ୍‌କୁ କହୁଥା'ନ୍ତି ।

- ''ବୁଝିଲୁ ବକ୍, ମଣିଷଗୁଡ଼ାକ ଏବେ ସୁନାପାଇଁ ପାଗଳ ହେଇଗଲେଣି । ସୁନା ଲୋଭରେ ସେମାନେ ତାଙ୍କ ଘରଦ୍ୱାର, ପିଲାପିଲିଙ୍କି ଛାଡ଼ି ଉତ୍ତର ଦିଗରେ



Digitized by srujanika@gmail.com

'କ୍ଲୋନ୍‌ଡ଼ାଇକ୍' ଆଡ଼େ ଚାଲିଯାଉଛନ୍ତି । ସେପଟେ ଏତେ ଶୀତ ଯେ ମଣିଷ ବଞ୍ଚିବା କଷ୍ଟ । ସେଆଡ଼ର ଲୋକଗୁଡ଼ାକ ମଧ୍ୟ ବଡ଼ ନିଷ୍ଠୁର । ହେଲେ ଏମାନେ କ'ଣ ସେକଥା ବୁଝୁଛନ୍ତି ? ଧନପାଇଁ ଏ ମଣିଷଗୁଡ଼ାକ ଯେ କୌଣସି ନିଷ୍ଠୁର କାମ କରିବାକୁ ପଛାଉ ନାହାନ୍ତି ।''

ବିଚାରପତି ମିଲର୍ ଖୁବ୍ ସତକଥା କହୁଥିଲେ ବକ୍‌କୁ । କାରଣ ସେଇଦିନ ରାତିରେ ହିଁ ମାନୁଏଲ ବଡ଼ ନିଷ୍ଠୁର କାମଟାଏ କଲା । ବଡ଼ ନିର୍ମମ ଭାବରେ ସେ ଦଗା ଦେଲା ଉଭୟ ମିଲର୍‌ଙ୍କୁ ଓ ବକ୍‌କୁ ।

ଗଭୀର ରାତି । ସାରା ଘରଟା ଚୁପ୍‌ଚାପ୍ । ମିଷ୍ଟର ମିଲର୍ ଶୋଇ ପଡ଼ିଥା'ନ୍ତି ନିଘୋଡ଼ ନିଦରେ । ଏତିକିବେଳେ ବକ୍ ରହୁଥିବା ଘରଟିକୁ ଧୀରେ ଧୀରେ ଫିଟେଇ ମାନୁଏଲ ଚୁ ଚୁ କରି ଡାକିଲା । ତାକୁ ଦେଖି ଲାଞ୍ଜ ହଲାଇଲା ବକ୍ । ମାନୁଏଲ ଚଟାପଟ୍ ବକ୍ ବେକରେ ଦୁଇ ଘେରା ଦଉଡ଼ି ଟାଣ କରି ବାନ୍ଧି ଦେଲା ।

ବକ୍ ବେକରେ ଗୋଟେ ଦାମିକା ବେଲଟ୍ ବନ୍ଧା ହୋଇଥାଏ ଆଗରୁ । ମାଲିକ ମିଷ୍ଟର୍ ମିଲର୍‌ଙ୍କ ନାଁ ଥାଏ ସେଥିରେ । ବେଲଟ୍‌ଟା ଖୁବ୍ କଅଁଳ । ଅଥଚ ଏ ଦଉଡ଼ିଟା ଏମିତି ଲାଗୁଛି କାହିଁକି ? ମନେ ହେଲା ଯେମିତି ବେକଟାକୁ କିଏ ଚିପି ଧରିଛି । ମାନୁଏଲର ମୁହଁକୁ ପ୍ରଶ୍ନ କଲା ଭଳି ଚାହିଁଲା ବକ୍ । ହେଲେ ମାନୁଏଲ ତା'ଆଖିରେ ଆଖି ମିଳେଇବାକୁ ସାହାସ କରୁ ନ ଥାଏ ।

ଏଥର ଦଉଡ଼ିଟାକୁ ଧରି ଟାଣିଲା ସେ । ବକ୍ କିଛି ବିରୋଧ କଲାନି । ଯାହା ହେଲେ ବି ସେ ତ ମାଲିକଙ୍କ ଲୋକ ! ସୁନା ପିଲାଟିଏ ପରି ମାନୁଏଲ ପଛେ ପଛେ ଗେଟ୍ ଡେଇଁ ସେ ବାହାରି ଆସିଲା ପଦାକୁ ।

କେତେବେଳୁ ରାସ୍ତାରେ ରହିଥାଏ ଗୋଟିଏ କଳାରଙ୍ଗର କାର୍ । ଇଞ୍ଜିନ୍‌କୁ ଘଡ଼ ଘଡ଼ କରି ଚାଲୁ ରଖି ଅପେକ୍ଷା କରିଥାଏ । ମାନୁଏଲ୍ ଡ୍ରାଇଭର୍‌କୁ ପଦେ ବି କିଛି କହିଲା ନାହିଁ । ପଶିଗଲା ଭିତରେ । ଅଡୁଆ ଅଡୁଆ ଲାଗୁଥିଲେ ବି ବକ୍ ଇଚ୍ଛାକରି ଗାଡ଼ି ଭିତରକୁ ପଶିଲା ଏବଂ ତୁନିତାନି ହୋଇ ବସିଲା । ଗାଡ଼ି ଛାଡ଼ିଲାବେଳେ ଅବଶ୍ୟ ଟିକେ  ଭଲ ଲାଗୁଥିଲା ତା'କୁ ।

ଅଳ୍ପ ସମୟ ପରେ ଗାଡ଼ି ଗୋଟିଏ ଜାଗାରେ ଅଟକିଗଲା । ସଙ୍ଗେ ସଙ୍ଗେ ମାନୁଏଲ ଏକ ପ୍ରକାର ଝିଙ୍କିଲାପରି ବକ୍‌କୁ ଟାଣି ଆଣିଲା ବାହାରକୁ । ବକ୍ ଦେଖିଲା ଜାଗାଟା ହଉଚି ତାଙ୍କ ଅଞ୍ଚଳର ରେଳଷ୍ଟେସନ ।



Digitized by srujanika@gmail.com

ଚାରିଆଡ଼ ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାର । ସେଠାରେ ଗୋଟେ ବଡ଼ ମୋଟା ଲୋକ ସେମାନଙ୍କୁ ଅପେକ୍ଷା କରି ରହିଥିଲା । ଲୋକଟା ମାନୁଏଲର ଦି'ଗୁଣା ହବ ବୋଧେ । ମାନୁଏଲକୁ ଦେଖି ସାମାନ୍ୟ ବିରକ୍ତ ହେଲାଭଳି କହିଲା- ''ଯାଃ ଏତେ ଡେରି କରିଦେଲୁ ! ଏଇ ଟ୍ରେନ ଆସିବା ବେଳ ହେଇଗଲାଣି ।''

ମାନୁଏଲ ଉତ୍ତର ଦେଲା- ''ମୁଁ କ'ଣ କରିବି, ମାଲିକ ବୁଢ଼ାଟା ଶୋଇବାକୁ ପରା ଡେରି କରିଦେଲା । ହେଲେ ମୋ ପଇସା କାହିଁ ?''

ମୋଟା ଅସୁରିଆ ଲୋକ ଜଣକ ବୋଧେ ଏଥିପାଇଁ ଆଗରୁ ପ୍ରସ୍ତୁତ ହେଇଥିଲା । ଚଟାପଟ୍ ଗୋଟେ ଟଙ୍କାଥଳି ବଢ଼େଇଦେଲା ମାନୁଏଲର ହାତକୁ । ଟଙ୍କା ଦେଇସାରିବା ପରେ, ବକ୍ ବନ୍ଧା ହେଇଥିବା ଦଉଡ଼ିଟା ଧରିବାପାଇଁ ସେ ହାତ ବଢ଼େଇଲା । ବକ୍ ଏ କଥା ଦେଖି ଟିକେ ଗାଉଁ ଗାଉଁ ହେଲା । ଲୋକଟି କିନ୍ତୁ ସେ କଥାକୁ ଖାତିର କଲାନି । ମାନୁଏଲ ହାତରୁ ଦଉଡ଼ିଟା ଛଡ଼େଇ ନେଇ ସେ ଟାଣି ଧରିଲା ବକ୍‌କୁ । ପୁଣି ଥରେ ଗାଉଁ ଗାଉଁ ହୋଇ ଭୁକିବାକୁ ଚେଷ୍ଟାକଲା ବକ୍ । ହେଲେ ଏ କ'ଣ ? ମୁହଁ ଖୋଲିଲା ବେଳକୁ ତାକୁ ଲାଗିଲା ବେକଟା ଦଉଡ଼ିରେ ଚିପି ହୋଇ ଯେମିତି ନିଃଶ୍ୱାସପ୍ରଶ୍ୱାସ ବନ୍ଦ ହେଇଯାଉଚି । ଅସୁରିଆ ଲୋକଟାର ଏଭଳି ବ୍ୟବହାରରେ ବକ୍‌ର ମୁଣ୍ଡକୁ ରାଗ ଚହଟି ଗଲା । ସବୁ ଶକ୍ତି ଠୁଳ କରି ଅଜଣା ମଣିଷଟା ଉପରକୁ ଝାମ୍ପି ପଡ଼ିବାପାଇଁ ଚେଷ୍ଟା କଲା ସେ । ଲୋକଟା କିନ୍ତୁ ଭୀଷଣ ଧୂର୍ତ୍ତ ଏବଂ ବଳୁଆ । ଅଧାରୁ ସେ ଧରି ପକାଇଲା ବକ୍‌ର ବେକମୂଳକୁ । ବେଲ୍‌ଟଟା ମୋଡ଼ି ଏଥର ପଛଆଡୁ ତାକୁ କାବୁ କରିନେଲା । ତାପରେ ବନ୍ଧା ହୋଇଥିବା ଦଉଡ଼ିଟାକୁ ଅଧିକ ଟାଣ କରିଦେଲା ।

ବକ୍ ଛଟପଟ ହେଲା । ନିଃଶ୍ୱାସ ନେବା ତା'ପାଇଁ କଷ୍ଟକର ହୋଇପଡ଼ିଲା । ମନେହେଲା ଦେହରୁ ସବୁଯାକ ବଳ ଖସିଯାଇ ସେ ଯେମିତି ନିସ୍ତେଜ ହେଇପଡୁଛି । ଆଖି ଦୁଇଟା ଢିମା ଢିମା ହୋଇଗଲା । ନିଃଶ୍ୱାସ ପ୍ରଶ୍ୱାସ ଅଭାବରୁ ଛାତି ବରଡ଼ାପତ୍ର ପରି ଥରିଲା ଖାଲି । କିଛି ସମୟପରେ ସେଇ ରେଳଷ୍ଟେସନର ପ୍ଲାଟଫର୍ମରେ ସେ ଅଚେତ ହୋଇ ପଡ଼ିଗଲା ।

କେବେ ଆସି ଟ୍ରେନ୍ ପହଞ୍ଚିଲା, କିଏ ତା'କୁ ଟେକିନେଇ ଟ୍ରେନ ଭିତରେ ପୂରେଇଲା ସେ କଥା ସେ କିଛି ଜାଣିପାରିଲାନି ।

ଚେତା ଫେରିଲାବେଳକୁ ଟ୍ରେନର ଛୁକ୍ ଛୁକ୍ ଶବ୍ଦ ତା' କାନରେ ପଡୁଥାଏ ଅଳ୍ପ ଅଳ୍ପ । ଆଖିମେଲି ଚାହିଁବାକୁ ଚେଷ୍ଟା କରୁଥାଏ ସେ ।



Digitized by srujanika@gmail.com

ଦେହ ତଥାପି ଝାଇଁ ଝାଇଁ କରୁଥାଏ । ମୁଣ୍ଡ ଭିତରଟା ଏବେ ବି ଧକ୍‌ଧକ୍ କରୁଚି । ଆଖି ଖୋଲି ଚାହିଁଲା ବକ୍ ।

ଦେଖିଲା ଟ୍ରେନ ଡବା ଭିତରେ ସେହି ଲୋକ ଜଣକ ତା'ପାଖରେ ବସିଛି । ବସି ବସି ଗୋଟେ ଏଡ଼େ ବଡ଼ ପିକା ଟାଣୁଛି । ଧୂଆଁ ଛାଡୁଛି ଭକ୍‌ଭକ୍ କରି । କୋଉ ଏକ ଅଜଣା ଦିଗରେ ଟ୍ରେନ୍‌ଟା ମାଡ଼ି ଚାଲିଚି ଆଗକୁ ଆଗକୁ ।

ଟିକେ ଉଠି, ଲୋକଟାଆଡ଼କୁ ଯିବାକୁ ଚେଷ୍ଟା କରୁଥିଲା ବକ୍ । ଏତିକିବେଳେ ପୁଣି ଥରେ ବେକର ଦଉଡ଼ିଟାକୁ ଭିଡ଼ି ଧରିଲା ଅଜଣା ମଣିଷ ଜଣକ । ପୂର୍ବଭଳି ଏଥର ବି ଚେତା ବୁଡ଼ିଗଲା ବକ୍‌ର । ଖଣ୍ଡେ କାଠଗଡ଼ ପରି ସେ ପଡ଼ି ରହିଲା ସେଠି ।

କେବଳ ଝାପ୍‌ସା ଝାପ୍‌ସା ତା'ର ମନେ ପଡୁଥିଲା ଯେ କେତେ ସମୟ ପରେ ଟ୍ରେନ୍‌ଟି ଅଟକିଲା ଏବଂ ତା'ପରେ ତାକୁ ଶୂନ୍ୟେ ଶୂନ୍ୟେ ଟେକି କିଏ ଜଣେ ପୂରେଇ ଦେଲା ଗୋଟେ ଯନ୍ତା ଭିତରେ । ଯନ୍ତାଟିକୁ ପୁଣି ଥରେ ଆଉ ଗୋଟେ ଟ୍ରେନ୍‌ରେ ଚଢ଼େଇ ଦିଆହେଲା । ପ୍ରାୟ ଦୁଇ ଦିନ ଦୁଇ ରାତି ଧରି ବକ୍ ସେଇ ଯନ୍ତା ଭିତରେ ଥାଇ ଟ୍ରେନ୍‌ରେ ବୁହା ହେଇଗଲା । ଖଣ୍ଡେ ରୁଟି ଓ ଟୋପେ ପାଣି ବି ମିଳିଲାନି ତାକୁ । ଇସ୍ କି ଦୟନୀୟ ଅବସ୍ଥା ! ଭୋକରେ ଆଉଟି ହେଇଯାଉଥାଏ ପେଟ । ତଣ୍ଟି ଶୁଖି ଭିତରେ କେମିତି ଘା' ହେଇଗଲା ଭଳି ବି ଲାଗୁଥାଏ ।

ମିଷ୍ଟର୍ ମିଲର୍‌ଙ୍କ ପାଖରେ ଥିଲାବେଳେ ବକ୍ ବଡ଼ ଆୟସରେ ଥିଲା । ବଡ଼ ଗେଲବସର ହୋଇ ଯାଇଥିଲା କହିଲେ ଚଳେ । ଏବେ ଏ ଅସୁରିଆ ମଣିଷଟାଠାରୁ ଏମିତି ନିର୍ମମ ବ୍ୟବହାର ପାଇ ସେ ମୂକ ପାଲଟି ଯାଇଥିଲା । ଆଗକୁ କ'ଣ ଘଟିବାକୁ ଯାଉଚି, ସେ କଥା କିଏ କହିବ ! !

ଧକେଇଲା ପରି ବକ୍ ପଡ଼ିଥାଏ ଯନ୍ତା ଭିତରେ । ଏଇ ବେଳକୁ ସେ ଲୋକଟା ଯନ୍ତା ଫିଟାଇ ବକ୍‌ର ବେକରୁ ଦଉଡ଼ିଟାକୁ ହୁଗୁଳେଇବାକୁ ଆରମ୍ଭ କଲା ।

ବକ୍ ଦେହକୁ ଜୀବନ ଫେରି ଆସିଲା ଅବା । ସେ ତା'ର ସମସ୍ତ ଶକ୍ତି ଏକାଠି କରି ଲୋକଟାର ଡାହାଣ ହାତକୁ ଘାଉଁ କରି କାମୁଡ଼ି ଦେଲା । ଲୋକ ଜଣକ ହାଉଳି ଖାଇଲା ପରି ହଟିଗଲା ପଛକୁ । କିନ୍ତୁ ପରମୁହୂର୍ତ୍ତରେ କ'ଣ ସବୁ ଅଭଦ୍ର ଭାଷାରେ ଗାଳି ଗୁଲଜ କରୁ କରୁ ବକ୍‌ର ପଞ୍ଜରା ହାଡ଼କୁ ଲକ୍ଷ୍ୟ କରି ଖୁବ୍ ଜୋର୍‌ରେ ଗୋଟେ ଆଣ୍ଠୁଆ ମାରିଲା । 'କ୍ୟାଉଁ' .... ଶବ୍ଦଟାଏ କରି ବକ୍ ଛିଞ୍ଚାଡ଼ି ହୋଇ ପଡ଼ିଲା ଖଣ୍ଡେ



Digitized by srujanika@gmail.com

ଦୂରରେ । ଆଖିରୁ ତା'ର ଜୁଳୁଜୁଳିଆ ଯୋକ ବାହାରି ପଡ଼ିଲେ । ତାକୁ ଚଉଦିଗ ଅନ୍ଧାର ଦିଶିଲା । ପୁଣି ଥରେ ଅଚେତ୍ ହୋଇ ସେ ତଳେ ପଡ଼ିଗଲା ।

ସକାଳ ହେଲା । ଚାରିଆଡ଼େ ଫରଚା ଆଲୁଅ । ଲୋକମାନଙ୍କ ହାଉଯାଉ ପାଟିତୁଣ୍ଡ ଶୁଭୁଛି । ସେତେବେଳକୁ ଚେତା ଫେରି ଆସିଥାଏ ବକ୍‌ର । ଟ୍ରେନ୍ ଡବା ଭିତରେ ଗୁଡ଼ାଏ ଲୋକ ପଶି ବକ୍ ରହିଥିବା ଯନ୍ତାଟାକୁ ଟେକି ନେଇ ଫୋପାଡ଼ିଲା ପରି ପକେଇ ଦେଲେ ଗୋଟେ ଗାଡ଼ିର ପଛପଟେ । ମୁଣ୍ଡ ଟେକି ବକ୍ ଚାହିଁବାକୁ ଚେଷ୍ଟା କଲା । ଆଖିରେ ତାର ଭୟ ଆଉ ବିସ୍ମୟ । କ'ଣ ଘଟୁଛି ଏସବୁ !

ସେ ଦେଖିଲା ଗାଡ଼ିର ପଛପଟେ ଏମିତି ଆଉ କେତେ ଯନ୍ତା ବି ରହିଛି । ସବୁଥିରେ ତା'ଭଳି ଗୋଟେ ଗୋଟେ ବଡ଼ କୁକୁର । ହେଲେ ତା'ଠାରୁ ସେମାନେ କେହି ବଡ଼ ନୁହନ୍ତି । ଚାରିପଟେ ଯନ୍ତାଗୁଡ଼ାକ ଇଆଡ଼େ ସିଆଡ଼େ ହୋଇ ଥୁଆ ହୋଇଚି । ମଝିରେ ବସିଚି ଆଉ ଗୋଟେ ଲୋକ । ତା' ନାଆଁ ମୋର୍ଗାନ୍ । ସେ ଏବେ ଏ କୁକୁରମାନଙ୍କ ଦାୟିତ୍ୱରେ ।

ମୋର୍ଗାନ୍, ବାଙ୍ଗରା ଲୋକଟିଏ ହେଲେ କ'ଣ ହବ ତା'ର କାନ୍ଧ ଓସାର ଓ ଛାତି ଚଉଡ଼ା ଦେଖାଯାଉଥାଏ । ଯମଦୂତ ପରି ହାତରେ ସେ ଧରିଥାଏ ଗୋଟେ ମୋଟା ଠେଙ୍ଗୁଣି । ଠେଙ୍ଗୁଣି ଅଗରେ ଗୋଟେ ଏତେ ବଡ଼ ଗୋବ । ବକ୍ ସେ ଠେଙ୍ଗୁଣିଟାକୁ ଦେଖି ଶଙ୍କିଗଲା ମନେ ମନେ । ଆଗକୁ ପୁଣି କୋଉ ବିପଦ ଅଛି କେଜାଣି !

ମୋର୍ଗାନ୍ ହାତରେ ଥିବା ସେଇ ମୋଟା ଠେଙ୍ଗୁଣି ହିଁ ବକ୍‌ର ଭବିଷ୍ୟତ ଜୀବନକୁ ପୂରା ଓଲଟପାଲଟ କରିଦେଲା ।

ଯନ୍ତାଗୁଡ଼ାକ ବୋହି ନଉଥିବା ଗାଡ଼ି କିଛି ସମୟ ପରେ ଅଟକି ଗଲା ଗୋଟେ ଅଜଣା ଜାଗାରେ । ସେଇଠୁ ଚାରି ଜଣ ଲୋକ ଆସି ବକ୍‌ର ଯନ୍ତାଟିକୁ ଟେକି ନେଇ କଚାଡ଼ିଲା ପରି ତଳେ ରଖିଦେଲେ । ଲୋକଗୁଡ଼ାକ ସବୁ ମଇଳା ଆଉ ଅସ୍‌କତିଆ । ସେମାନଙ୍କ ଭିତରୁ ଜଣେ ତା'ର ମଇଳା ହାତଟା ବାରମ୍ବାର କପାଳରେ ଘଷୁଥାଏ ।

ମୋର୍ଗାନ୍‌କୁ ଲକ୍ଷ୍ୟ କରି ବକ୍ ଆଡ଼େ ହାତ ଦେଖେଇ ସେ କହିଲା - ''ହେଇଟି ଏ ନାଲିଆଖିଆ ଅସୁରଟାକୁ ଏଥର ତତେ ସାବାଡ୍ କରିବାକୁ ପଡ଼ିବ ।''

ଏକଥା ଶୁଣି ମୋର୍ଗାନ୍, ବକ୍‌ର ଯନ୍ତା ପାଖକୁ ଆସି ଭଲଭାବରେ ଟିକେ ଚାହିଁଲା ତାକୁ । ବକ୍ ଧଡ଼ପଡ଼ ହୋଇ ଉଠି ଠିଆ ହେଲା ମୋର୍ଗାନ୍‌କୁ ପାଖରେ ଦେଖି । ଦାନ୍ତ କେଲେଇ ସେ ଗାଉଁ ଗାଉଁ ହେବାକୁ ଲାଗିଲା ।



Digitized by srujanika@gmail.com

ମୋର୍ଗାନ ଓ ବକ୍ ଭିତରେ ଏଇ ହିଁ ପ୍ରଥମ ସାକ୍ଷାତ୍ ।

ବକ୍‌ର ଦେହସାରା ଘୃଣାରେ ଭରିଯାଇଥାଏ ସେତେବେଳକୁ । ଭୋକଶୋଷର ଦାଉରେ ଦୁର୍ବଳ ହୋଇପଡ଼ିଥିଲେ ବି ମନରେ ଘୃଣାଯୋଗୁ ସେ ଏକ ନୂଆ ସାହସ ଅନୁଭବ କରୁଥିଲା ନିଜ ଭିତରେ । ହଠାତ୍ ସେ ଖିଙ୍କାରି ଆସିଲା ମୋର୍ଗାନ୍‌ଆଡ଼କୁ । ଏତେ ଜୋର୍‌ରେ ଆଗକୁ ଝପଟି ଆସିଲା ଯେ ସାରା ଦେହଟା ଢାଇକିନା ମାଡ଼ ହେଲା ଯନ୍ତାର ଲୁହା ବାଡ଼ ଦେହରେ ।

ମୋର୍ଗାନ କିନ୍ତୁ ନୀରବ । ଓଲଟି ହସୁଥାଏ, କେମିତି ଏକ ବିକୃତ ମୁହଁ କରି । ହଠାତ୍ ସେ ପାଟି କରି କହିଲା - "ଯନ୍ତାଟାକୁ ଖୋଲିଦିଅ ।"

ସେଠି ଠିଆ ହୋଇଥିବା ଅନ୍ୟମାନେ ଭାବିଲେ, ରାଗରେ ବୋଧେ ସେ ଏମିତି କହୁଚି । ନ ହେଲେ ଏତେବେଳେ କଅଣ ଯନ୍ତା ଖୋଲିବା କଥା ? ବକ୍ ଗାଉଁ ଗାଉଁ ହଉଥାଏ ଯନ୍ତା ଭିତରେ ।

ହେଲେ ସମସ୍ତଙ୍କୁ ହତଚକିତ କରି ମୋର୍ଗାନ କୋଉଠୁ ଗୋଟେ କୁରାଢ଼ି ଆଣି, ଯନ୍ତାର ତାଲାଟାକୁ ଗୋଟେ ଚୋଟରେ ଭାଙ୍ଗିଦେଲା ।

କିଏ୍ ଜଣେ ପାଟି କଲା-"ପଳେଇ ଚାଲରେ ଭାଇ । ନ ହେଲେ ଏ କୁକୁର ଆମ ସମସ୍ତଙ୍କୁ ଝୁଣି ପକେଇବ ।"

କିଏ ବାହାରକୁ ଦଉଡ଼ିଲା ତ ଆଉ କିଏ ଯନ୍ତା ଉପରେ ଚଢ଼ିଗଲା ।

ବକ୍ ଏଥର ଖିଙ୍କାରି ହୋଇ ମାଡ଼ି ଆସିଲା କବାଟଆଡ଼କୁ । ତା' ମୁହଁର ମାଡ଼ରେ ଯନ୍ତା କବାଟଟା ଧଡ୍ କିନା ଖୋଲିଗଲା । ବାହାରକୁ ବାହାରିବା ମାତ୍ରେ ସବୁ ବଳ ଏକାଠି କରି ତୀର ବେଗରେ ସେ କୁଦା ମାରିଲା ମୋର୍ଗାନ୍ ଉପରକୁ । ଅନ୍ୟ ଲୋକମାନଙ୍କର ଆଖି ଖୋସି ହୋଇଗଲା ଏ କଥା ଦେଖି ।

ମୋର୍ଗାନ୍ କିନ୍ତୁ ଥିଲା ଆହୁରି ଚାଲାକ୍ ଏବଂ ଚଞ୍ଚଳ । ବକ୍ ତା' ଉପରକୁ କୁଦି ପଡ଼ିବା ଆଗରୁ ସେ ତା'ର ପିଠିକୁ ଲକ୍ଷ୍ୟ କରି ଠେଙ୍ଗୁଣିରେ ବସେଇଲା ଏକ ବଜ୍ର ପାହାର । ସାରା ଜୀବନରେ ବକ୍ ଏମିତି ଦଣ୍ଡ ପାଇ ନ ଥିଲା କେବେ । ଆଖିରୁ ତା'ର ନିଆଁ ଝୁଲ ଖସି ପଡ଼ିଲା । ସେଇ ଗୋଟିଏ ପାହାରରେ ତଳେ ପଡ଼ିଗଲା ମୁହଁମାଡ଼ି । କ'ଣ ଟାଏ ତା' ଉପରେ ପଡ଼ିଲା ବୋଲି ଜାଣି ପାରିଲାନି ସେ ।



Digitized by srujanika@gmail.com



ବକ୍‌କୁ ମରଣାନ୍ତକ ଆଣ୍ଠୁଆ ମାଡ଼



Digitized by srujanika@gmail.com

କିନ୍ତୁ ପର ମୁହୂର୍ତ୍ତରେ ସେ ନିଜକୁ ସଜାଡ଼ି ନେଲା । ଧଡ଼ପଡ଼ ହୋଇ ଠିଆ ହୋଇ ଆଉ ଥରେ ଲମ୍ଫ ମାରିଲା । ହେଲେ ମୋର୍ଗାନ୍ କି ଛାଡ଼ିବା ଲୋକ ? ଏମିତି କେତେ ଦୁର୍ଦ୍ଧର୍ଷ କୁକୁରଙ୍କୁ ସେ ସାବାଡ କରିଚି ଆଗରୁ । ପୁଣି ଥରେ ପୂର୍ବାପେକ୍ଷା ଆହୁରି ଜୋର୍‌ରେ ସେ ଆଉ ଏକ ଠେଙ୍ଗୁଣି ପାହାର ବସେଇଲା ବକ୍‌ର ପିଠିରେ । ବକ୍ ଚାରି କାତ ମେଲି ତଳେ ପଡ଼ିଗଲା । ସେ ଜାଣି ପାରିଲା ଯେ ମୋର୍ଗାନ୍ ହାତର ଠେଙ୍ଗୁଣି ହିଁ ତା'କୁ ଏମିତି ଆଘାତ କରୁଚି । ଏଥର ସେ ଉଠି ପଡ଼ି ମୋର୍ଗାନ୍‌ର ହାତକୁ ଲକ୍ଷ୍ୟ କରି ଡିଆଁ ମାରିଲା । ଏଇମିତି ଯେତେଥର ସେ ଡିଆଁମାରି କାମୁଡ଼ିବାପାଇଁ ଚେଷ୍ଟାକଲା, ସେତେ ଥର ତଳେ ଆସି ମୁହଁ ମାଡ଼ି ପଡ଼ିଲା । ସେଇ ଏକା ଦଶା ।

ପ୍ରାୟ ବାର ଚଉଦ ଥର ତା' ଉପରେ ଠେଙ୍ଗୁଣି ପାହାର ପଡ଼ିବା ପରେ ସେ ଅବଶ ହୋଇପଡ଼ିଲା । ତଳେ ଠିଆ ହେବା ମଧ୍ୟ କଷ୍ଟକର ହୋଇପଡ଼ିଲା ତା'ପାଇଁ । ଠକ୍ ଠକ୍ ଥରୁଥାଏ ଦେହ । ଏଇ ସମୟରେ ମୋର୍ଗାନ୍ ଆଗକୁ ମାଡ଼ିଆସି ବକ୍‌ର ନାକ ଦଣ୍ଡାକୁ ଚାହିଁ ଦେଲା ଏକ ପାହାର । ଓଃ କି ଭୀଷଣ କଷ୍ଟ !!

ସେଇ ଶେଷ ପାହାରକରେ ବକ୍‌କୁ ସବୁଆଡ଼ ଝାପ୍‌ସା ଦିଶିଲା । ଆସ୍ତେ ଆସ୍ତେ ତା ଆଖି ଆଗରୁ ସବୁ ଯେମିତି କୁଆଡ଼େ ଅପସରିଗଲେ ଅନ୍ଧାରରେ ।

ଚେତା ଫେରିଲାରୁ ସେ ଦେଖିଲା, ଯୋଉଠି ମୁହଁମାଡ଼ି ପଡ଼ିଥିଲା ସେଇଠି ପଡ଼ିଚି । ତା' ବେକରୁ ବେଲ୍‌ଟ ଫିଟେଇ ନେଇ ଗୋଟେ ହାତରେ ଧରିଚି ମୋର୍ଗାନ୍ । ଆର ହାତରେ ଠେଙ୍ଗୁଣି । ବେଲ୍‌ଟର ଲେଖାରୁ ସେ ବକ୍‌ର ନାଆଁଟାକୁ ପଢୁଥିଲା ପାଟିକରି ।

ଏଥର ମୋର୍ଗାନ୍ ତଳକୁ ଚାହିଁଲା ଏବଂ ଧୀର ସ୍ୱରରେ କହିଲା - "ତା ହେଲେ ବକ୍ ତୁ ଏବେ ଜାଣିଯିବୁଣି କିଏ ତୋ'ର ମାଲିକ ! ତେଣୁ ଚୁପଚାପ୍ ସୁନାପିଲାଟି ପରି ମୋ କଥା ତତେ ମାନିବାକୁ ପଡ଼ିବ । ତେବେଯାଇ ତୋ ଉପରେ ଠେଙ୍ଗୁଣି ପାହାର ବନ୍ଦ ହେବ । ବୁଝିପାରୁଛୁ ତ ! ଏତକ କହିସାରି ବାଆଁ ହାତ ବଢ଼େଇ , ସେ ବକ୍‌ର ଖଣ୍ଡିଆଖାବରା ମୁଣ୍ଡଟାକୁ ଟିକେ ଥାପୁଡ଼େଇ ଦେଲା ।

ଆଉ ଟୋପାଏ ବି ବଳ ନ ଥିଲା ବକ୍ ଦେହରେ । ମୋର୍ଗାନ୍‌ର ହାତଟାକୁ କାମୁଡ଼ିଦବାକୁ ମନ ହେଉଥିଲେ ବି, ମୁଣ୍ଡ ଉଠେଇଲା ଭଳି ଶକ୍ତି ତା ପାଖରେ ନ ଥିଲା । ଚରମ ଘୃଣାରେ ଭରି ଯାଇଥିଲା ତାର ମନ । କିନ୍ତୁ ସେ ଠିକ କଲା ମୋର୍ଗାନକୁ ଆଉ କାମୁଡ଼ିବନି । ଠେଙ୍ଗୁଣିମାଡ଼ର ତାଗିଦ୍ ବିଷୟରେ ଯଥେଷ୍ଟ ଜ୍ଞାନ ସେ ପାଇ



Digitized by srujanika@gmail.com

ସାରିଥିଲା ସେତେବେଳକୁ । ଠେଙ୍ଗୁଣି ପାଖରେ ସେ ହାରି ଯାଇଥିଲା ସତ, ହେଲେ ପୂରାପୂରି ଭାଙ୍ଗି ପଡ଼ି ନ ଥିଲା ।

ବକ୍ ନିଜ ମନକୁ ବୁଝାଇଲା - ମତେ ଏ ଅଲଗା ମଣିଷଗୁଡ଼ାଙ୍କ କଥା ମାନିବାକୁ ପଡ଼ିବ । ଆଉ ବିରୋଧ କରି କିଛି ଲାଭ ନାହିଁ । କାରଣ ଠେଙ୍ଗୁଣି ଧରିଥିବା ଜଣେ ବଳୁଆ ମଣିଷ ସାମନାରେ ଗୋଟେ ଛାର କୁକୁର ବା କ'ଣ କରିପାରିବ ? ତେଣୁ, ଇଚ୍ଛା ହେଉ ନ ଥିଲେ ବି ସେ ଏଭଳି ଏକ ନୂଆ ଜୀବନ ସହ ସାଲିସ୍ କରିନେଲା । ଏଇ ସମୟରେ ମୋର୍ଗାନ୍ ଯେମିତି କିଛି ଖାଇବା ଜିନିଷ ଓ ପିଇବା ପାଣି ତା' ସାମନାରେ ଆଣି ରଖୁଚି , ସେସବୁ ବେଶ୍ ଆନନ୍ଦରେ ଗ୍ରହଣ କରିନେଲା ସେ । ଟିକିଏ ମାତ୍ର ଉଁ ଚୁଁ କଲାନି । ଓଲଟି ଖୁସି ହେଲାଭଳି ହାବଭାବ ଦେଖେଇଲା ।

ତା' ପରେ କେତେ ହପ୍ତାଯାଏଁ ସେ ମୋର୍ଗାନ୍‌କୁ ଆଉ କିଛି ଅବାଗିଆ ବ୍ୟବହାର ଦେଖେଇଲାନି । ଖାଇପିଇ ଚୁପ୍ ଚାପ୍ ଶୋଇ ରହିଲା । ଶୋଇଶୋଇ ସେ ଅପେକ୍ଷା କଲା ମାଡ଼ଯୋଗୁଁ ହୋଇଥିବା ଖଣ୍ଡିଆ ଘା' ଗୁଡ଼ାକ ଶୁଖିଯିବାପାଇଁ ।

ବିଶ୍ରାମ ନେଉଥିବାବେଳେ ବକ୍ ଦେଖିଲା ନିଇତି କେତେ ବାଲୁବାଲୁଆ କୁକୁରଙ୍କୁ ଯନ୍ତା ଭିତରେ ଆଣି ରଖାଯାଉଚି । ଗୁଡ଼ାଏ ଲୋକ ବି ଆସୁଛନ୍ତି ସେ ଜାଗାକୁ । ସେମାନେ ସେଠିକୁ ଆସି ଆଙ୍ଗୁଠି ଦେଖେଇ କୁକୁରମାନଙ୍କୁ ବାଛୁଛନ୍ତି ଏବଂ ମୋର୍ଗାନ୍‌କୁ ଟଙ୍କାଥଳି ଦେଇ ଯନ୍ତାସହ ଗୋଟେ ଗୋଟେ କୁକୁର ନେଇ ଯାଉଛନ୍ତି । ବଡ଼ ରୁକ୍ଷ ଜଣା ପଡୁଥାଆନ୍ତି ସେ ଲୋକଗୁଡ଼ାକ । ମୋର୍ଗାନ୍‌ର ଲୋକେ ଯନ୍ତାଗୁଡ଼ାକୁ ବାହାରକୁ ଟେକି ନେବାରେ ସାହାଯ୍ୟ କରୁଥାଆନ୍ତି ସେମାନଙ୍କୁ ।

ଥରେ ଗଲେ ସେ କୁକୁରମାନେ ଆଉ ଫେରିବାର ନାଆଁ ନ ଥାଏ । ପୁଣି କୁଆଡୁ ନୂଆ କୁକୁର ଆଣି ରଖା ହୁଅନ୍ତି ସେଇଠି । ଏଇଭଳି ଲାଗିଥାଏ ନିତି । ବକ୍‌ର ତଣ୍ଡି ଶୁଖିଗଲା ଏ କାରବାର ଦେଖି । କାହିଁକି କେଜାଣି ତା' ଛାତି ଧଡ଼ପଡ଼ ହେଲା । ହେଲେ ଫି' ଥର ବଛା ବଛି ପରେ ସେ ଖୁସି ହୋଇଯାଏ । କାରଣ ତାକୁ କେହି ପସନ୍ଦ କରି ବାଛନ୍ତି ନାହିଁ ।

ତଥାପି ସେ ଭାବୁଥାଏ, କାଲିକୁ କ'ଣ ଘଟିବ କିଏ କହିବ ? ହେ' ଭଗବାନ, କି ଅବସ୍ଥାରେ ତା'କୁ ପଡ଼ିବାକୁ ଥିଲା !!

ଧୀରେ ଧୀରେ ବକ୍ ସୁସ୍ଥ ହେଲା । ବେଶ୍ ଚେଙ୍ଗା ଦେଖାଗଲା । ମିଷ୍ଟର୍ ମିଲର୍‌ଙ୍କ ପାଖରେ ଥିବାବେଳପରି ସେ ତାଗଡ଼ା ଦେଖାଯାଉଥିଲା ଏବେ ।



Digitized by srujanika@gmail.com




ଠେଙ୍ଗୁଣି ପାଖରେ ବକ୍ ହାର ମାନିଲା



Digitized by srujanika@gmail.com

ଦିନେ ମୋର୍ଗାନ୍ ସାଙ୍ଗରେ ଜଣେ ବାଙ୍ଗରା ଲୋକ ସେଠିକୁ ଆସିଲେ । ଫରାସୀ ଭାଷା ଭଳି ସେ ଇଂରେଜିରେ ବଙ୍କେଇ ବଙ୍କେଇ କଥା କହୁଥାଆନ୍ତି । ଯନ୍ତାଗୁଡ଼ାକ ପାଖରେ ଚାଲି ଯାଉଥାଆନ୍ତି ଡଗଡଗ ହୋଇ । ଟିକିଏ ମାତ୍ର ନଜର ପକେଇ କୋଉଟା ଜାତିଆ କୋଉଟା ଅଜାତିଆ କୁକୁର ବୋଧେ ଜାଣି ପାରୁ ଥାଆନ୍ତି ସେ ।

ଚାଲି ଯାଉ ଯାଉ ସେ ଅଟକିଗଲେ 'କର୍ଲି' ଯନ୍ତା ପାଖରେ । 'କର୍ଲି' ଗୋଟିଏ ଖୁବ୍ ଭଲ ପ୍ରକୃତିର ମାଈ କୁକୁର । ତା'ର ହାବଭାବ ବଡ଼ ଭଦ୍ର ଏବଂ ସଂଯତ । ବକ୍ ଧରାହୋଇ ଆସିବାର ଅଳ୍ପ କେଇଦିନ ପରେ ସେ ଆସିଥିଲା ସେଠାକୁ । ଥରେ ହେଲେ ବି ମୋର୍ଗାନ୍‌ର ବ୍ୟବହାର ବିରୁଦ୍ଧରେ ପ୍ରତିବାଦ କରିନି ସେ । ଯେତେବେଳେ ଯେଉଁ ଆଦେଶ ମିଳିଚି ବିନା ଦ୍ୱିଧାରେ ମାନି ନେଇଚି ସବୁ । ଖାଇବା ପିଇବାରେ , ଟିକିଏ ବି ଗୁଁ ପୁଁ ହେଇନି ।

ବାଙ୍ଗରା ଭଦ୍ରଲୋକ 'କର୍ଲି' ପାଖରେ ଠିଆ ହୋଇ ରହିଲେ କିଛି ସମୟ । ତା' ପରେ ଗୋଡ଼, ନଖ ଓ ଦାନ୍ତ ଆଦି ପରୀକ୍ଷା କଲେ । ଛାତି ଆଉ ଆଗ ଗୋଡ଼ ହାତମାରି ଦେଖିଲେ । 'କର୍ଲି' ସେଇଭଳି ଠିଆହୋଇଥାଏ । ଆଗନ୍ତୁକଙ୍କ ପ୍ରତି ବିଶ୍ୱାସ ଆସିଯାଇଥାଏ ତା'ର ।

''ଏଇଟା ଗୋଟେ ଜାତିଆ କୁକୁର । ମୁଁ ଯାକୁ ନେବି ।'' ଏତିକି କହି ସେ ଚାରିଟା ଯନ୍ତା ଡେଇଁଗଲା ପରେ ବକ୍‌ର ଯନ୍ତା ସାମ୍ନାରେ ଆସି ଠିଆ ହେଲେ । ବକ୍‌କୁ ଦେଖୁ ଦେଖୁ ଟିକେ ଲାଗିଯାଇ ନିରେଖି ଚାହିଁଲେ । ଆଖି ତାଙ୍କର ଉଜ୍ଜଳି ଉଠିଲା ହଠାତ୍ । ସନ୍ତୋଷର ଚେନାଏ ହସ ଖେଳିଗଲା ମୁହଁରେ । ଠିଆ ହୋଇପଡ଼ି ଗଭୀର ନିଃଶ୍ୱାସ ନେଉ ନେଉ ସେ କହିଲେ -''ଆଚ୍ଛା ମୋର୍ଗାନ୍ , ଏଟା ତ ଗୋଟେ ଚମତ୍କାର କୁକୁର ! ଯାର ଓଜନ ଯେମିତି, ଦେହର ମାଂସପେଶୀ ବି ସେହିପରି ଟାଣ । ଯଥେଷ୍ଟ ଘଞ୍ଚ ବାଳ ଅଛି ଦେହରେ । ଯେତେ ବରଫ ପଡ଼ିଲେ ଯା'କୁ ସହଜରେ ଥଣ୍ଡା ଧରିବନି । ଖୁବ୍ କାମିକା ଜଣାପଡୁଚି କୁକୁରଟା । କୋଉଠୁ ପାଇଲୁରେ ଯା'କୁ ?''

ଗାରୁ ଗାରୁ ହେଇ ମୋର୍ଗାନ୍ ଉତ୍ତର ଦେଲା -''ସେଥିରୁ ତୁମେ କ'ଣ ପାଇବ ? ସେମିତିକା ପ୍ରଶ୍ନ ଏଠି ପଚାରି ଲାଭ ନାହିଁ । ଯଦି କୁକୁରଟା ପସନ୍ଦ ହଉଚି ତେବେ ଉଚିତ ଦାମ୍ ଦେଇ ତାକୁ ନେଇଯାଇପାର ।''

ଆଗନ୍ତୁକ ନଇଁପଡ଼ି ବକ୍‌ର ଯନ୍ତାଟିକୁ ଖୋଲିଦେଲେ । ଆଉଁଶିଲା ଭଳି ତା'ର ଗୋଡ଼ ଓ ଛାତିରେ ହାତ ବୁଲେଇଲେ କିଛିବେଳ । ତା' ପରେ ପାଟିକୁ ମେଲାକରି



Digitized by srujanika@gmail.com

କ'ଣ ସବୁ ଦେଖିଲେ । ଶେଷରେ ଗୋଡ଼ ଚାରୋଟିକୁ ପରୀକ୍ଷା କଲେ । ନିରବରେ ଚାହୁଁଥାଏ ବକ୍ । ସେ ଜାଣେ ପାଖରେ ଠେଙ୍ଗୁଣି ଧରି ଠିଆହେଇଚି ମୋର୍ଗାନ୍ । ଟିକିଏ କିଛି ଗଡ଼ବଡ଼ ହେଲେ ପାହାର ବସିଯିବ ପିଠିରେ ।

ଶୀତର ଏକ ଲହରୀ ଖେଳିଗଲା ବକ୍ ଭିତରେ । ବାଙ୍ଗରା ଭଦ୍ରଲୋକଙ୍କ ସହ ତା'କୁ ଯିବାକୁ ପଡ଼ିବ ନିଶ୍ଚୟ । ମୋର୍ଗାନ୍‌କୁ ସେ ଘୃଣାକରେ । ଅଥଚ ଏଇ କେତେଦିନ ହେଲା ମୋର୍ଗାନ୍ ଆଉ କୁକୁରରେ ଭରା ଏ ଜାଗାଟା ସହିତ ସେ ଏକ ପ୍ରକାରର ଅଭ୍ୟସ୍ତ ହେଇଯାଇଥିଲା । ଏବେ, ଏ ଜାଗାକୁ ବି ଛାଡ଼ିବାକୁ ପଡ଼ିବ ତା'କୁ । ଆଗକୁ କ'ଣ ଘଟିବ କିଏ ଜାଣେ ସେ କଥା ! ଠେଙ୍ଗୁଣି ମାଡ଼ରେ ସେଇ ଶେଷଥର ଅଚେତ ହେବାପରେ ମୋର୍ଗାନ୍ ହାତରୁ ଆଉ ମାଡ଼ ନ ଖାଇଲେ ବି ତା'ଠାରୁ ବନ୍ଧୁତା ପାଇ ନ ଥିଲା ସେ ।

ଭଦ୍ରଲୋକଙ୍କର ଆଉଁଶା ତାକୁ ନିଆରା ଲାଗୁଥିଲା ଟିକେ । ତା'ର ମୁଣ୍ଡ ବେକ ଏବଂ ଛାତିରେ ସେ ହାତ ବୁଲାଉଥିଲେ । ଆଖିଯୋଡ଼ିକ ତାଙ୍କର ବେଶ୍ ବନ୍ଧୁତ୍ୱପୂର୍ଣ୍ଣ । ହଠାତ୍ ବିଚାରପତି ମିଷ୍ଟର୍ ମିଲର୍‌ଙ୍କ କଥା ମନେ ପଡ଼ିଗଲା ବକ୍‌ର । ଲୁହ ଜକେଇ ଆସିଲା ତା'ର ଆଖିରେ ।

ବକ୍‌ର କାନକୁ ସାଉଁଳୁ ସାଉଁଳୁ ଭଦ୍ରଲୋକ ଜଣକ କହିଲେ - ''ଆରେ, ଏମିତି କ'ଣ ଚାହୁଁଚୁ ? ମୁଁ ପରା ତୋ'ର ନୂଆ ବନ୍ଧୁ ।''

ଏଥର ଠିଆ ହୋଇପଡ଼ି, ବକ୍‌ର ଦାମ୍ କେତେ ବୋଲି ସେ ପଚାରିଲେ । ମୋର୍ଗାନ୍ ଉତ୍ତର ଦେଲା ''ତିନି ଶହ । ମନେ ରଖନ୍ତୁ ଏ ଦାମ୍ ମୋଟେ ବେଶିକିଛି ନୁହେଁ । ଏଭଳି କୁକୁର ହଜାରକରେ ବି ଗୋଟାଏ ମିଳିବା ମୁସ୍କିଲ୍ ।''

ଆଗନ୍ତୁକ ଭଦ୍ରଲୋକ ମୋର୍ଗାନ୍ ହାତକୁ ଟଙ୍କାତକ ବଢ଼େଇଦେଲେ ଏବଂ କହିଲେ - ''ହଜାରକରେ କାହିଁକି, ଏମିତିକା କୁକୁର ଦଶହଜାରରେ ବି ଗୋଟିଏ ମିଳିବା କଷ୍ଟକର । ଠିକ୍ ଅଛି, ମୋର ଯିବାବେଳ ହେଇଗଲାଣି ।''

· ବକ୍‌କୁ ଯନ୍ତାରେ ବନ୍ଦ କରି ଗୋଟିଏ ମଟରଗାଡ଼ି ପଛରେ ରଖାଗଲା । ମୋର୍ଗାନ୍‌ର ଲୋକମାନେ କର୍ଲିର ଯନ୍ତାକୁ ମଧ୍ୟ ଟେକିଆଣି ସେଇ ଗାଡ଼ି ପଛରେ ରଖିଦେଲେ । ସେଇଠି 'ବକ୍' ଓ 'କର୍ଲି' ପରସ୍ପରକୁ ଚାହିଁଲେ । ଏକ ପ୍ରକାରର ଉତ୍ତେଜନା ଓ ଆତଙ୍କରେ ଦୁହେଁ ଚୁପ୍‌ଚାପ୍ ଠିଆ ହୋଇଥିଲେ । ବାଙ୍ଗରା ଭଦ୍ରଲୋକ ଜଣକ ଏଥର ଡ୍ରାଇଭର୍ ପାଖରେ ଆସି ବସିଲେ ଗାଡ଼ି ଆଗରେ ।



Digitized by srujanika@gmail.com

ଗାଡ଼ି ଆଗକୁ ଆଗକୁ ମାଡ଼ି ଚାଲିଲା ।'ବକ୍' କିମ୍ବା 'କର୍ଲି' ଥରେ ହେଲେ ବି ପଛକୁ ଫେରି ଚାହିଁଲେନି । କ'ଣ ଲାଭ ପଛକୁ ଚାହିଁ ବା ପଛକଥା ଭାବି ? ଏଣିକି ଅଜଣା ଭବିଷ୍ୟତ ହିଁ ଘାରୁଥିଲା ଦୁହିଁଙ୍କର ମନକୁ । ଦେଖାଯାଉ କ'ଣ ହଉଚି !

ଯେଉଁ ଭଦ୍ରଲୋକ 'ବକ୍' ଏବଂ 'କର୍ଲି'କୁ କିଣି ନେଲେ ତାଙ୍କର ନାଆଁ 'ପେରଲଟ୍' । ସେ ଜଣେ ଫରାସୀବଂଶଜ କାନାଡ଼ିଆନ୍ । କାନାଡ଼ା ସରକାରଙ୍କ ପାଖରେ ଚାକିରି । ସେ ଏବଂ ତାଙ୍କର ଜଣେ ସହକର୍ମୀ 'ଫ୍ରାଙ୍କୋସ୍' ସବୁଦିନେ କୁକୁରଟଣା ସ୍ଲେଜ୍‌ଗାଡ଼ିରେ ଗୁରୁତ୍ୱପୂର୍ଣ୍ଣ ସରକାରୀ ଖବରଟବର ନିଆଅଣା କରନ୍ତି । ଡାକ ବ୍ୟବସ୍ଥା କେମିତି ଖୁବ୍ ଶୀଘ୍ର ହୋଇ ପାରିବ ତାହା ହିଁ ଥିଲା ସେ ଦୁଇ ଜଣଙ୍କର ଅସଲ କାମ ।

ଓ୍ୱାଶିଂଟନ୍‌ର 'ସିଆଟଲ୍' ନାମକ ଏକ ଜାଗାରୁ ପେରଲଟ୍ ଓ ଫ୍ରାଙ୍କୋସ୍ ଜାହାଜ ଚଢ଼ି ସେମାନଙ୍କର ଯାତ୍ରା ଆରମ୍ଭ କଲେ । ଜାହାଜଟିର ନାଆଁ 'ନରହ୍ୱାଲ' । ଜାହାଜର ଡକ୍ ଉପରେ ଠିଆ ହୋଇ କର୍ଲି ଓ ବକ୍ ଦୂର ସ୍ଥଳଭାଗକୁ ଚାହିଁଥାଆନ୍ତି । ଉଷ୍ଣମ ଜଳବାୟୁ ସହ ଏଇ ସେମାନଙ୍କର ଶେଷ ସାକ୍ଷାତ୍ । ତେଣିକି ମଞ୍ଜଥରା ହେମାଳ ଶୀତ । ଏ କଥା ବକ୍ ବିଚରା ଜାଣନ୍ତା ବା କେମିତି ?

ପେରଲ୍‌ଟ, ତଳକୁ ଆସି ବକ୍ ଓ କର୍ଲିକୁ ଜାହାଜର ତଳମହଲାକୁ ନେଇଗଲେ । ସେଇଠି ଆଉ ଦୁଇଟି କୁକୁର ଅପେକ୍ଷା କରିଥିଲେ ଏମାନଙ୍କୁ । ଗୋଟିକର ନାଆଁ 'ଡାଭେ' ଓ ଆରଟିର ନାଆଁ 'ସ୍ପିଜ୍' । ଡାଭେଟା ଗୁଙ୍ଗାମୁହାଁ । ତା'ର  ଆଖି ଦୁଇଟା ନିଦୁଆ ନିଦୁଆ ଜଣା ପଡୁଥାଏ । କାହା ସହିତ ମିଶିବାପାଇଁ ତା'ର ଯେମିତି ତିଳେ ହେଲେ ବି ଆଗ୍ରହ ନାହିଁ । ମାତ୍ର ସ୍ପିଜ୍ ବେଶ୍ ଖୁସିବାସିଆ । ଦେଖିବାକୁ ବରଫପରି ଧଳା । ବକ୍ ପରି ବେଶ୍ ବଡ଼ ଏବଂ ଓଜନଦାର । କର୍ଲି ଓ ବକ୍‌ଙ୍କୁ ଦେଖିବା ମାତ୍ରେ ସମ୍ଭ୍ରାନ୍ତ ବଡ଼ଲୋକି ଢଙ୍ଗରେ ମୁରୁକିହସା ଦେଇ ସେ ସେମାନଙ୍କୁ ଅଭିନନ୍ଦନ ଜଣେଇଲା ।

ସ୍ପିଜ୍‌ର ଚେହେରାରୁ ମୁରବିପଣିଆର ହାବଭାବ ଜଣା ପଡୁଥାଏ । ସ୍ଲେଜ୍ ଗାଡ଼ିଟଣାରେ ସେ ସବୁବେଳେ ଆଗୁଆ ଭୂମିକା ନିଏ । ସେଇଥିପାଇଁ ଉଭୟ କୁକୁର ଓ ମଣିଷ ତାକୁ ବହୁତ ଭଲ ପାଆନ୍ତି ।

ଅଥଚ ସ୍ପିଜ୍‌କୁ ଦେଖୁ ଦେଖୁ କର୍ଲି ମନରେ କେମିତି ଗୋଟେ ଭୟ ପଶିଗଲା ।

ପେରଲଟ୍ ଓ ଫ୍ରାଙ୍କୋସ୍ ଏବେ କୁକୁରମାନଙ୍କ ସହିତ ଆଉ ବନ୍ଧୁତା କଲାଭଳି ମିଶାମିଶି କରୁ ନ ଥିଲେ । ବକ୍‌କୁ କିଣିଲାବେଳେ ପେରଲ୍‌ଟ ସିନା ଆଉଁସା ଆଉଁସି କରିଥିଲେ, ମାତ୍ର ବର୍ତ୍ତମାନ ସେ ନିଜକୁ ଦୂରେଇ ରଖୁଥିଲେ ସବୁ କୁକୁରଙ୍କ ପାଖରୁ ।



Digitized by srujanika@gmail.com

ଏବେ ତାଙ୍କ ବ୍ୟବହାର ସମସ୍ତଙ୍କପ୍ରତି ସମାନ । କାହାପ୍ରତି ଭଲ ନୁହେଁ କି ଖରାପ ନୁହେଁ । ତେଣୁ ଗୁଙ୍ଗାମୁହାଁ 'ଡାଭେ'କୁ ଯେତିକି ଖାଇବା ମିଳୁଥିଲା; ଖୁସିବାସିଆ 'ସ୍ପିଜ୍'କୁ ମଧ୍ୟ ମିଳୁଥିଲା ସେତିକି । ସେଥିରେ ଟିକିଏ ବି ପାତର ଅନ୍ତର ନ ଥାଏ ।

କିନ୍ତୁ ସ୍ପିଜ୍ ଏ କଥାକୁ ସହଜରେ ମାନିନେଇ ପାରୁ ନ ଥିଲା । ତା'ର ଧାରଣା, ଅନ୍ୟ କୁକୁରଙ୍କଠାରୁ ସେ ଭିନେ । ଯେ କୌଣସି ସାଧାରଣ କୁକୁରକୁ ଯେତିକି ଦିଆ ହବ ତାକୁ ବି ସେତିକି ଦିଆ ହବ, ଏକଥାଟାକୁ ସେ ଗ୍ରହଣ କଲା ନାହିଁ । ଭାବିଲା ନିଜର ମୁରବିପଣିଆ ଏଠାରେ ନ ଦେଖାଇଲେ ହବନି । ତେଣୁ ଖିଆପିଆ ସମୟରେ ସେ ଧୀରେ ଧୀରେ ବକ୍ ପାଖକୁ ଯାଇ ଠିଆ ହେଲା । ବକ୍ ମୁହଁ ଉଠେଇ ଯେମିତି ଚାହିଁଚି, ସ୍ପିଜ୍ କ'ଣ କଲା ନା ଝଟ୍‌କରି ବକ୍‌ର ମାଂସ ଖଣ୍ଡକ ନେଇଗଲା । ବକ୍ କି ଛାଡ଼ିବା ଲୋକ । ରଡ଼ି କରି ମାଡ଼ି ଆସିଲା ସ୍ପିଜ୍ ଆଡ଼କୁ । ଏତିକିବେଳେ ପେରଲଟ୍‌ଙ୍କ ହାତରେ ଥିବା ଚାବୁକଟା ସାଇଁ ସାଇଁ କରି ଦୁଇ ଥର ବସିଗଲା ସ୍ପିଜ୍‌ର ପିଠିରେ । ଗୋଟାଏ ବିକଟାଳ ରଡ଼ି ଛାଡ଼ି ସ୍ପିଜ୍ ମାଂସ ଖଣ୍ଡକ ପକେଇ ଦେଲା ସେଠି । ଚୁପ୍‌ଚାପ୍ ଛିଡ଼ା ହେଇଗଲା ବକ୍ । ତା'ପରେ ନିଜର ମାଂସ ଖଣ୍ଡକ ଉଠେଇ ଆଣି ଖାଇବାକୁ ଲାଗିଲା ।

ବକ୍ ଭାବିଲା, ସ୍ପିଜ୍‌ଟା ବଡ଼ ଲୋଭୀ । ଠିକ୍ ହେଇଚି ତାକୁ । ସ୍ପିଜ୍‌କୁ ଉଚିତ ଶିକ୍ଷା ଦେଇଛନ୍ତି ପେରଲଟ୍ । ପେରଲଟ୍ ସତରେ ନିରପେକ୍ଷ ଲୋକ । କିନ୍ତୁ ସ୍ପିଜ୍ ଜଳୁଥାଏ ରାଗରେ ମନେ ମନେ । ତାର କଳା କଳା ଆଖିରେ ରାଗର ଝଲକ ସ୍ପଷ୍ଟ ବାରିହେଇ ପଡୁଥାଏ ।

ସ୍ପିଜ୍ ବକ୍‌ର ମାଂସ ଚୋରେଇବା, ପେରଲଟ୍ ସ୍ପିଜ୍‌କୁ ଚାବୁକରେ ପିଟିବା ଓ ବକ୍ ତା'ର ମାଂସ ଖଣ୍ଡକ ଫେରି ପାଇବା, ଏସବୁ କଥା ଘଟିଗଲା ମାତ୍ର ଗୋଟାଏ ମୁହୂର୍ତ୍ତ ଭିତରେ । ଅଥଚ ସେତିକିରେ 'କର୍ଲି' ଏତେ ଭୟ ପାଇଯାଇଥିଲା ଯେ ଉତ୍କଣ୍ଠା ଏବଂ ଆତଙ୍କରେ ଢେର ସମୟ ଯାଏଁ ସେ ଖାଲି କ୍ୟାଉଁ କ୍ୟାଉଁ ହୋଇ ରଡ଼ି କଲା । ଡାଭେର କିନ୍ତୁ କୋଉ କଥାକୁ ଖାତିର ନ ଥାଏ । ଏ ଘଟଣା ଘଟିବାବେଳେ ସେ କେବଳ ଥରେ ମାତ୍ର ମୁହଁ ଟେକି ଚାହିଁ ଦେଇ ତା'ର ଖାଇବାରେ ପୂର୍ବଭଳି ଲାଗି ରହିଲା । ସତେ ଯେମିତି କିଛି ଘଟିନି ।

ଅଳ୍ପ ଦିନ ଭିତରେ ବକ୍ ଜାଣିଗଲା ଯେ ଡାଭେକୁ ବିଚଳିତ କରିବା ସହଜ କଥା ନୁହେଁ ।



Digitized by srujanika@gmail.com

ଜାହାଜଟା ସମୁଦ୍ରର ଛାତି ଉପରେ ପଡି ଉଠି ଛୁଟିଥାଏ । କୋଉଠି ଝଡ଼ ତ କୋଉଠି ଥିରପାଣି । ବକ୍ କିମ୍ବା କର୍ଲି ଆଗରୁ କେବେ ଜାହାଜରେ ଯାଇ ନ ଥିଲେ । ତେଣୁ ଏ ଉଠାପକା ଦେଖି ସେମାନେ ଆତଙ୍କରେ ଖାଲି ଛଟପଟ ହେଉଥାଆନ୍ତି । ଏତିକିବେଳେ ଡାଭେ ଚୁପ୍‌ଚାପ୍ ଶୋଇଥାଏ ନିଜ ଜାଗାରେ । ଏମାନଙ୍କର ଛଟପଟ ଦେଖି ସେ କେବଳ ନାଲି ନାଲି ଆଖିକରି ସେମାନଙ୍କୁ ଥରେ ଚାହିଁଲା ଏବଂ ପୂର୍ବଭଳି ପୁଣି ନିଜ ଜାଗାରେ ଶୋଇ ରହିଲା ।

'ଡାଭେ'ର ହାବଭାବ ଦେଖି ବକ୍‌କୁ ଲାଜ ଲାଗିଲା । ଆରେ ଡାଭେ ତ ଡରୁନି, ସେ ନିଜେ ଏତେ ଡରୁଚି କାହିଁକି ? ଏଥର ମନକୁ ଦୃଢ଼କରି ବକ୍ ଚୁପ୍‌ଚାପ୍ ଠିଆ ହୋଇ ରହିଲା । କିନ୍ତୁ 'କର୍ଲି' ଡରିମରି ସେଇଭଳି କ୍ୟାଉଁ କ୍ୟାଉଁ ହଉଥାଏ ।

'ନରହ୍ୱାଲ' ଜାହାଜଟି ଉତ୍ତର ଦିଗକୁ ଆହୁରି ଆହୁରି ମାଡ଼ି ଚାଲିଥାଏ । ଦିନରେ ଦୁଇଥର ସବୁ କୁକୁରଙ୍କୁ ଡେକ୍ ଉପରେ ନେଇ ବୁଲାଯାଏ । ନ ହେଲେ ହଠାତ୍ ସେମାନେ ହୁଏତ ଥଣ୍ଡା ସମ୍ଭାଳି ପାରିବେନି । ସେତିକିବେଳେ ବକ୍ ଲକ୍ଷ୍ୟ କରେ ବେଳକୁ ବେଳ ପାଗ ହେମାଳ ହେଉଛି । ଥଣ୍ଡାର ପ୍ରକୋପ ବଢୁଚି । ଏତେ ଥଣ୍ଡା ଯେ ଲୋମମୂଳ ଠିଆ ଠିଆ ହେଇଯାଉଛି । ଏଇ ଗହଳ ବାଳଯୋଗୁ ବୋଧେ ଜୀବଜନ୍ତୁମାନେ ହେମାଳ ଥଣ୍ଡା ସହି ଯାଆନ୍ତି । ନ ହେଲେ ଅବସ୍ଥା କ'ଣ ହୁଅନ୍ତା କେଜାଣି ?

ଜାହାଜ, ଉତ୍ତର ଦିଗକୁ ମାଡ଼ି ଚାଲିଥାଏ । ଦିନ ଦିନ ଧରି ଘଡ଼ ଘଡ଼ ଶବ୍ଦ କରି ଚାଲିଥାଏ ସମୁଦ୍ରର ଛାତି ଉପରେ । ଧୀରେ ଧୀରେ ବକ୍‌କୁ ସମୁଦ୍ର ଯାତ୍ରା ସୁହାଇବାକୁ ଆରମ୍ଭ କଲା । ପୂର୍ବଭଳି ସେ ଆଉ ନିଜ ଭିତରେ କୌଣସି ଆତଙ୍କ ବା ଉଠାପକା - ଭାବ ଅନୁଭବ କରୁ ନ ଥିଲା ।

ହଠାତ୍ ଦିନେ ସକାଳେ ପୂର୍ବଦିଗ ସମ୍ପୂର୍ଣ୍ଣ ଆଲୋକିତ ହେବା ପୂର୍ବରୁ ନିଦ ଭାଙ୍ଗିଗଲା ବକ୍‌ର । ତା'କୁ ଲାଗିଲା କ'ଣ ଗୋଟେ ଯେମିତି କିଛି ପରିବର୍ତ୍ତନ ଘଟିଚି । ସବୁଆଡ଼ ଚୁପ୍‌ଚାପ । ସେ କାନପାରି ଶୁଣିଲା । ନା ଜାହାଜର ଘଡ଼ ଘଡ଼ ଶବ୍ଦ ଆଉ ଶୁଣାଯାଉ ନାହିଁ । ନରହ୍ୱାଲ ଜାହାଜଟି ଦଉଡ଼ି ଦଉଡ଼ି ଆସି, ହାଲିଆ ହୋଇ ବୋଧେ ଶୋଇ ଯାଇଛି । ଏଣିକି ଯାତ୍ରା ବନ୍ଦ ।

ବକ୍ ଠିକ୍‌କଥା ଭାବୁଥିଲା । କେତେବେଳୁ ରାତିରୁ ଜାହାଜ ଆସି ବନ୍ଦରରେ ଲଙ୍ଗର ପକେଇ ସାରିଥିଲା । ପେରଲଟ୍ ଏବଂ ଫ୍ରାଙ୍କୋସ୍ ଦଉଡ଼ା ଧାପଡ଼ା କରି ସେମାନଙ୍କର ଜିନିଷପତ୍ର ବନ୍ଧାବନ୍ଧି କରୁଥିଲେ । ଶେଷରେ ଫ୍ରାଙ୍କୋସ୍ କୁକୁରମାନଙ୍କର



Digitized by srujanika@gmail.com

ଶିକୁଳିଗୁଡ଼ିକୁ ଏକାଠି କଲେ । କୁକୁରଯାକ କେମିତି ପଦାକୁ ବାହାରିବେ ସେଥିପାଇଁ ଠେଲାପେଲା ହେଉଥାଆନ୍ତି । ତଳ ମହଲାରୁ ଉଠି ଡକ୍‌କୁ ଯାଇ ସେଠାରୁ ବାହାରକୁ ବାହାରିବାକୁ ପଡ଼ିବ । ସେମାନଙ୍କ ମନରେ ଉତ୍କଣ୍ଠା । ଜାହାଜ ଅଟକିବା ପରଠାରୁ ମଣିଷ ଭଳି ସେମାନେ ବି ଚଳଚଞ୍ଚଳ ହୋଇ ପଡ଼ିଥାଆନ୍ତି ।

ଏ ଉତ୍କଣ୍ଠାରେ ଫ୍ରାଙ୍କୋସ ପଛେ ପଛେ ବକ୍ ହିଁ ପ୍ରଥମେ ଉଠିଗଲା ଡକ୍ ଉପରକୁ । ଆରେ ଏ' କଣ ? ଚମକି ପଡ଼ିଲା ସେ । ଡକ୍ ଉପରେ ଗୋଡ଼ ଦଉ ଦଉ ତାର ପାଦଗୁଡ଼ାକ ବୁଡ଼ିଗଲେ କ'ଣ ଧଳାଧଳା ଓଦାମାଟି ଭଳି ଜିନଷରେ । ସେ ଦୁଇ ହାତ ଡେଇଁ ପଡ଼ିଲା ପଛକୁ । ମାତ୍ର ଦେଖିଲା ଧଳା ଧଳା ହୋଇ କଣ ଗୁଡ଼େ ଗୁଣ୍ଡ ଆକାଶରୁ ଖସି ତା ଉପରେ ପଡୁଛି । ଦେହର ଲୋମ ଉପରେ ଜମି ଯାଉଚି ସେସବୁ । କେମିତି ଗୋଟାଏ ରୋମାଞ୍ଚ ଖେଳିଗଲା ମନରେ । ସେ ଜୋର୍ କରି ଝାଡ଼ିଦେଲା ନିଜର ଦେହକୁ, ହେଲେ ପୁଣି ଗୁଣ୍ଡ ଆସି ଗଦା ହେବାକୁ ଲାଗିଲା ଉପରେ । ମୁହଁ ଟେକି, ନାକ କୁଞ୍ଚେଇ ସେ ଅନୁଭବ କରିବାକୁ ଚେଷ୍ଟା କରୁଥିଲା କ'ଣ ଏ ଗୁଣ୍ଡଗୁଡ଼ାକ । ପାଟି ମେଲାଇ ଜିଭର ଅଗଟିପରେ ଚାଖିବାପାଇଁ ମଧ୍ୟ ଚେଷ୍ଟାକଲା । ନିଆଁ ଝୁଲ ପରି ଜିଭରେ ଚାଉଁକିନା ପଡ଼ି ସେଇଲାଗେ ମିଳେଇ ଯାଉଥାଏ ଗୁଣ୍ଡ । ତାକୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଥାଏ । ପୁଣି ଥରେ ଜିଭ ଲମ୍ବେଇ ବକ୍ ଦେଖିଲା ସେଇ ଏକା ଅନୁଭବ । ବଡ଼ ବିଚିତ୍ର ଜିନିଷ ତ !!

ବକ୍‌ର ଏମିତି ବାରମ୍ବାର ଜିଭ ବାହାର କରି ବରଫ ଚାଖିବା ଢଙ୍ଗ ଦେଖି ଫ୍ରାଙ୍କୋସ୍ ଓ ଜାହାଜର ଜଣେ ଦୁଇ ଜଣ କର୍ମଚାରୀ ହୋ, ହୋ, ହୋଇ ହସିବାକୁ ଲାଗିଲେ । ଏତେବେଳକୁ ବକ୍ ଜାଣିଗଲାଣି ଯେ ଏହା ବରଫପାତ । ତେଣୁ ଆଉ ଟିକେ ଦୃଢମନା ହୋଇ ସେ ଏଥର ତା'ର ବିରାଟ ମୁଣ୍ଡଟାକୁ ଉପରକୁ ଉଠାଇ ସେଇଭଳି ଆଁ କରି ରହିଲା । ତା ମୁହଁରେ ଏବଂ ପାଟିରେ ବରଫଗୁଣ୍ଡମାନ ପଡୁଥାଏ ଅବିଶ୍ରାନ୍ତଭାବେ । ବଡ଼ ମଜା ଲାଗୁଥାଏ ତାକୁ । ବାଃ ବରଫପାତ ବେଶ୍ ଚମତ୍କାର । ମନେ ମନେ ଭାବୁଥାଏ ବକ୍ ।

ପେରଲ୍ଟ ଏବଂ ଫ୍ରାଙ୍କୋସ୍, ବକ୍ ତଥା ଅନ୍ୟ କୁକୁରମାନଙ୍କୁ ଜାହାଜରୁ ବାହାର କରିବାପାଇଁ ବାଟ କଢ଼େଇ ନଉଥାଆନ୍ତି । ବରଫଗୁଣ୍ଡ ଅବିରାମ ଗତିରେ ପଡୁଥାଏ ଉପରୁ । ବକ୍‌ର ଚାଲିରେ ଦୃଢ଼ତା ଆସି ଯାଇଥାଏ । ଥଣ୍ଡାକୁ ଖାତିର କରୁ ନ ଥାଏ ସେ । ନୂଆ ପରିସ୍ଥିତି ସହ ବେଶ୍ ଖାପ ଖୁଆଇ ନେଇଥାଏ ନିଜକୁ ।



Digitized by srujanika@gmail.com

ମାତ୍ର ବକ୍‌ର ହୁଲ୍‌ସିଆପଣ ବେଶୀ ବେଳ ତିଷ୍ଠିପାରିଲାନି । ଅଳ୍ପ ସମୟ ଭିତରେ ସବୁ କୁକୁରଙ୍କୁ ଖଣି କାମ ଚାଲିଥିବା ଗୋଟେ ଅଞ୍ଚଳକୁ ନିଆ ହୋଇଗଲା । ସେଠାକାର କାମଦାମ ବଡ଼ ଗଣ୍ଡଗୋଳିଆ ଏବଂ ବିପଦପୂର୍ଣ୍ଣ । ସବୁବେଳେ ହୋ, ହୋ, ପାଟିଗୋଳ ଲାଗିଥାଏ ସେଠି । ଜଘନ୍ୟ ଏବଂ ହିଂସ୍ର ଦେଖାଯାଉଥିବା ଶହ ଶହ ଲୋକ ସେ ଇଲାକାରେ କାମ କରୁଥା'ନ୍ତି । ସେମାନଙ୍କ ଭିତରୁ କେହି ଜଣେ ବି ପେରଲଟ୍ କିମ୍ବା ଫ୍ରାଙ୍କୋସ୍‌ଙ୍କ ପରି ଭଦ୍ର ନ ଥିଲେ । ସମସ୍ତଙ୍କ ହାତରେ ଲାଠି ଏବଂ ଚାବୁକ । ସେମାନଙ୍କର କୁକୁରଗୁଡ଼ାକ ବି ଆହୁରି କଦର୍ଯ୍ୟ ଏବଂ ମାରାତ୍ମକ । ସବୁବେଳେ ବକ୍ ଚେଷ୍ଟା କରୁଥାଏ, ନିଜକୁ କେମିତି ଏମାନଙ୍କଠାରୁ ସୁରକ୍ଷିତ ରଖିବ ।

ବରଫ ଅଞ୍ଚଳର ଏ ଦୁର୍ଦ୍ଦାନ୍ତ କୁକୁରଗୁଡ଼ାକ ବଡ଼ ଭୟଙ୍କରଭାବେ ଅଭଦ୍ର । ସହରର କୁକୁରମାନଙ୍କ ସହ ଚାଲି ଚଳଣି ହାବ ଭାବରେ ଏମାନଙ୍କର କୌଣସି ମେଳ ନାହିଁ । ବିଚାରପତି ମିଷ୍ଟର୍ ମିଲର୍‌ଙ୍କ ପାଖରେ ଥିବାବେଳେ ବକ୍ ଏଭଳି ଗୋଟିଏ ବି ବଦ୍‌ମାସ କୁକୁର ସେ ସହରରେ ଦେଖି ନାହିଁ କୋଉଠି ।

ସବୁବେଳେ କୁକୁରଗୁଡ଼ାକ ମାଡ଼ଗୋଳକୁ ତିଆର । କଥା କଥାକେ କଳି, କାମୁଡ଼ା କାମୁଡ଼ି । ଅଭଦ୍ରଗୁଡ଼ାକ କୋଉଠି ଥାଆନ୍ତି, ବିନା ସଙ୍କେତରେ ଦଉଡ଼ି ଆସି ଯାହାକୁ ମନ ତାକୁ ପୂଳାଏ କାମୁଡ଼ି ଦିଅନ୍ତି ।

ବକ୍ କେବେ ବି ଗୋଟାଏ ଡରକୁଳା କୁକୁର ନ ଥିଲା । ମାତ୍ର ଏ ପରିସ୍ଥିତିରେ ସେ ବଡ଼ ଚିନ୍ତିତ ଦେଖାଯାଉଥାଏ ।

ସେ ଜାଣିଗଲା ତାକୁ ଏ ଜାଗାରେ ଖୁବ୍ ହୁସିଆର ହୋଇ ଚଳିବାକୁ ପଡ଼ିବ । ଯେତେ ଦୂର ସମ୍ଭବ ସେ ହିଂସ୍ର, ବିକଟାଳ କୁକୁରଗୁଡ଼ାକ ଠାରୁ ଦୂରେଇ ରହିବାକୁ ହବ । ନ ହେଲେ କୋଉ ଛଟକରେ ଜୀବନ ଚାଲିଯାଇ ପାରେ ।

ସେଠି ରହିବାର ମାତ୍ର ଗୋଟିଏ ଦିନ ହୋଇଥାଏ । ସେତିକି ଭିତରେ ଯାହା ଜଣାଶୁଣା । ଅଥଚ 'କର୍ଲି ଏବଂ 'ବକ୍'କୁ ସଂଗେ ସଂଗେ କାମରେ ଲଗେଇ ଦିଆହେଲା । ନୂଆ କାମ ସଂପର୍କରେ ଆଗରୁ ବକ୍‌ର ଟିକିଏ ବି ଧାରଣା ନ ଥିଲା । ଫ୍ରାଙ୍କୋସ୍ ଫିତା ଓ ବକ୍‌ଲସ୍ ଲାଗିଥିବା ଗୋଟାଏ ବଡ଼ ଯୋତ ଆଣି ବକ୍‌କୁ ପହିଲେ ସେଥିରେ ବାନ୍ଧି ଦେଲେ । ବଡ଼ ଅଡୁଆ ଲାଗୁଥାଏ ତାକୁ । ସେ ଜାଣିଲା ଏଇଟା ହଉଚି ଲଗାମ୍ । ଏଇ ଭଳିଆ ଲଗାମ୍ ବିଚାରପତି ମିଷ୍ଟର୍ ମିଲର୍‌ଙ୍କ ଘୋଡ଼ାମାନଙ୍କ ଦେହରେ ବନ୍ଧା ହେଉଥିଲା । ଫ୍ରାଙ୍କୋସ୍ ତା' ପରେ ଲଗାମ ବନ୍ଧା ହୋଇଥିବା ବକ୍‌କୁ ନେଇ



Digitized by srujanika@gmail.com

ଗୋଟାଏ ସ୍ଲେଜ୍‌ଗାଡ଼ିରେ ଯୋଚି ଦେଲେ । ଏଥର ଗାଡ଼ିରେ ବସିପଡ଼ି ଫ୍ରାଙ୍କୋସ୍ ଡାକ ଛାଡ଼ିଲେ - ''ବକ୍ ଚାଲ୍ ତ ଆଗକୁ । ମସ୍‌ମସ୍ ।''

ଶଗଡ଼ ଗାଡ଼ିରେ ଯୋଚା ହୋଇଥିବା ବଳଦକୁ ''ହଅ ଡି.ଡି.'' କହି ଟାକରା ଫୁଟେଇ ଡାକ ଦେଲେ ବଳଦ ଯେମିତି ଆଗକୁ ମାଡ଼ିଚାଲେ ସେମିତି ବରଫ ଅଞ୍ଚଳରେ ସ୍ଲେଜ୍‌ଗାଡ଼ିରେ ଯୋଚା ହୋଇଥିବା କୁକୁରକୁ 'ମସ୍' ମସ୍' ବୋଲି କହିଲେ ସେ ଗାଡ଼ି ଟାଣିବାକୁ ଲାଗେ ।

ଫ୍ରାଙ୍କୋସ୍ ପାଞ୍ଚଣ ବାଡ଼ି ଭଳି ଗୋଟେ ଚାବୁକ୍ ବି ଧରିଥାଆନ୍ତି ହାତରେ । ଉପରକୁ ଟେକି ପବନରେ ସାଇଁ ସାଇଁ କରୁଥାଆନ୍ତି । ବକ୍ କିଛି ବୁଝି ପାରୁ ନ ଥାଏ । ମୁଣ୍ଡ ଯେମିତି ତାର ଗୋଳମାଳ ହୋଇ ଯାଉଚି । ପଛକୁ ମୁହଁ ବୁଲେଇ ସେ ଚାହିଁଲା ଫ୍ରାଙ୍କୋସ୍‌ଙ୍କୁ । ସେ ପୂର୍ବଭଳି ଆଗକୁ ଯିବାପାଇଁ ଆଙ୍ଗୁଠି ଦେଖେଇ ବକ୍‌କୁ ନିର୍ଦ୍ଦେଶ ଦେଉ ଥାଆନ୍ତି - ''ହାଃ ବକ୍ । ଚାଲ୍ ଏଥର । ମସ୍‌ମସ୍ ।''

ଠିକ୍ ଭାବେ କିଛି ବୁଝି ନ ପାରିଲେ ବି ସେ ଅନୁମାନ କଲାଯେ ଆଗକୁ ଆଗକୁ ଚାଲିବାପାଇଁ ତାକୁ କୁହାଯାଉଚି । ସମସ୍ତ ବଳ ଖଟେଇ ଆଗକୁ ଚାଲିବାକୁ ଚେଷ୍ଟାକଲା ବକ୍ । ଘୋଡ଼ା ଭଳି ଏମିତି ବନ୍ଧା ହୋଇ ଗୋଟେ ଗାଡ଼ି ଟାଣିବାକୁ ମୋଟେ ପସନ୍ଦ କରୁ ନ ଥିଲା ସେ । ହେଲେ କଅଣ କରାଯିବ ? ଯାହା ଘଟିବାକୁ ଥିବ ତା ଅବଶ୍ୟ ଘଟିବ । ସେ ଜାଣେ ଫ୍ରାଙ୍କୋସ୍ ସବୁବେଳେ କାମ ଚାହାଁନ୍ତି । ବିନା ପ୍ରତିବାଦରେ କାମ କରି ଚାଲିଲେ ସେ ଖୁସି । ଅତଏବ ବରଫ ଉପରେ ସ୍ଲେଜ୍‌ଗାଡ଼ିଟିକୁ ଟାଣି ଟାଣି ସେ ମାଡ଼ି ଚାଲିଲା ଆଗକୁ । ଅଳ୍ପ ସମୟ ଭିତରେ ସେମାନେ ପାଖ ଜଙ୍ଗଲରେ ପହଞ୍ଚଗଲେ । ଫ୍ରାଙ୍କୋସ୍ ଗାଡିରୁ ଡେଇଁପଡ଼ି ହାତରେ କୁରାଢ଼ି ଧରି ଜଙ୍ଗଲରୁ ଜାଳେଣି କାଠ କାଟିବାକୁ ଲାଗିଲେ । ସେତିକିବେଳେ ସ୍ଲେଜ୍‌ଗାଡ଼ି ପାଖରେ ଶୋଇ ଶୋଇ ବିଶ୍ରାମ କରୁଥାଏ ବକ୍ । ଛୋଟ ଛୋଟ କାଠଗଡ଼ମାନ ଗାଡ଼ିରେ ଲଦା ହେଲା । ପୁଣି ବକ୍‌କୁ 'ମସ୍ ମସ୍' ବୋଲି ଡ଼ାକ, ଦେଲେ ଫ୍ରାଙ୍କୋସ୍ । କାଠ ଲଦା ହୋଇଥିଲେ ବି ଗାଡ଼ି ଟାଣିବାକୁ ବେଶି କିଛି କଷ୍ଟ ଲାଗୁ ନ ଥାଏ ବକ୍‌କୁ । ଖୁବ୍ ଶୀଘ୍ର ସେମାନେ କ୍ୟାମ୍ପରେ ଆସି ପହଞ୍ଚିଗଲେ । ଦେହରୁ ଲଗାମ୍ ଫିଟେଇବାବେଳେ ସାବାସି ଦେବା ଢଙ୍ଗରେ ଫ୍ରାଙ୍କୋସ୍ ମୁଣ୍ଡ ହଲେଇ ବକ୍‌କୁ ଟିକେ ଥାପୁଡ଼େଇ ଦେଲେ ।

ତା'ପର ଦିନ ଗାଡ଼ିରେ ଅନ୍ୟ କୁକୁରମାନଙ୍କୁ ଗୋଟି ଗୋଟି କରି ଯୋଚାଗଲା । ସେମାନେ ଆଗ ପଛ ହେଇ ଧାଡ଼ି କରି ଠିଆ ହୋଇ ଥାଆନ୍ତି । ଆଗରେ ଥାଏ



Digitized by srujanika@gmail.com

'ୱିଜ୍' ଏବଂ ସବାପଛରେ ସ୍ଲେଜ୍‌କୁ ଲାଗିକରି ଥାଏ 'ଡାଭେ'। 'ଡାଭେ'ର ଠିକ୍ ଆଗରେ ବନ୍ଧା ହୋଇଥାଏ ବକ୍ । କୁକୁରମାନେ ହାଇଁପାଇଁ ହଉଥାଆନ୍ତି ଆଗକୁ ମାଡ଼ିଯିବା ପାଇଁ । ଫ୍ରାଙ୍କୋସ୍ 'ମସ୍ ମସ୍' ବୋଲି ଯେମିତି ଡାକ ଦେଇଛନ୍ତି ସମସ୍ତେ ଝୁଙ୍କିପଡ଼ି ଆଗକୁ ଧାଇଁବାକୁ ଆରମ୍ଭ କଲେ । ବକ୍ ଏତେ ଶୀଘ୍ର ଦଉଡ଼ିବାପାଇଁ ପ୍ରସ୍ତୁତ ହୋଇ ନ ଥିଲା । ଅନ୍ୟମାନଙ୍କର ଏ କାରବାର ଦେଖି ସେ ଘାବରେଇ ଗଲା । ଏତିକିବେଳେ କାହିଁକି ଆଗରୁ ପ୍ରସ୍ତୁତ ହୋଇ ନ ଥିଲା ବୋଲି, 'ଡାଭେ' ତା'ର ପଛ ଫଡ଼ିଆକୁ ଚୋଟେ କାମୁଡ଼ିଦେଲା । ବଡ଼ ବାଧିଲା ବକ୍‌କୁ । ତଥାପି ସେ କିଛି ପ୍ରତିକ୍ରିୟା ପ୍ରକାଶ ନ କରି ମାଡ଼ି ଚାଲିଲା ଆଗକୁ ।

ଫ୍ରାଙ୍କୋସ୍ ଚାବୁକ୍‌ଟାକୁ ସମସ୍ତଙ୍କ ମୁଣ୍ଡ ଉପରେ ସାଇଁ ସାଇଁ କରୁଥାନ୍ତି । କିନ୍ତୁ ବାଡ଼ଉ ନ ଥାନ୍ତି କାହାକୁ । କୋଉ କୁକୁର ଯଦି ମଠେଇ ଯାଉଥାଏ କିମ୍ବା କୋଉଠି ଭୁଲ ରାସ୍ତାକୁ ମୁହଁ ବୁଲାଉ ଥାଏ, ତେବେ ସେ ତା'ର ପିଠିକୁ ଚାବୁକରେ ଟିକେ ଛୁଇଁ ଦିଅନ୍ତି କେବଳ । ଆଗୁଆକୁକୁର ହିସାବରେ ଅନ୍ୟ ସବୁ କୁକୁରଙ୍କର ଗତିକୁ ନିୟନ୍ତ୍ରଣ କରୁଥାଏ ୱିଜ୍ । ସେ ଯେଉଁ ଆଡକୁ ମୋଡୁଥାଏ ବା ଯେଉଁ ବାଟରେ ଯିବାକୁ ଗତି ବଦଳାଉଥାଏ ଅନ୍ୟମାନେ ତାକୁ ଲକ୍ଷ୍ୟ କରି ତା'ର ପଛ ଧରି ଚାଲନ୍ତି ।

ସମସ୍ତ ବଳ ଖର୍ଚ୍ଚ କରି 'ବକ୍' ସବୁବେଳେ ଠିକ୍ ଠିକ୍ କାମ କରିବାକୁ ଚେଷ୍ଟା କରୁଥାଏ । ଏତିକିବେଳକୁ ଫ୍ରାଙ୍କୋସ୍ ପାଟି କରି କହିଲେ - ''ହୋ'' । ବକ୍ ଜାଣିଯାଇଥାଏ, ଏଇଟା ହଉଛି ଅଟକିବାପାଇଁ ସୂଚନା । ଏତେ ବାଟ ଦଉଡ଼ି ଦଉଡ଼ି ଆସିବା ପରେ, ଟିକେ ବିଶ୍ରାମ ନେବାପାଇଁ ଖୁବ୍ ଇଚ୍ଛା ହଉଥିଲା ତା'ର । ତେଣୁ ''ହୋ'' ଡାକ ଶୁଣି ଖୁସି ହୋଇଗଲା ସେ ।

ଆଗରୁ ବକ୍ ମୋଟେ ଏ କାମ ବିଷୟରେ କିଛି ଜାଣି ନ ଥିଲା । ତେଣୁ ଅଳ୍ପକରେ ଖୁବ୍ ହାଲିଆ ହୋଇପଡୁଥିଲା । ଅନ୍ୟମାନଙ୍କ ସହ ସମାନ ତାଳ ରଖି ଦଉଡ଼ିବା ମଧ୍ୟ ବେଶ୍ ଅସୁବିଧା ଜଣା ପଡୁଥିଲା ତାକୁ । କିନ୍ତୁ ଦୁଇ ଚାରି ଦିନ ପରେ ସବୁ ଠିକ୍ ହୋଇଗଲା । ସେତେ କିଛି ଅସୁବିଧା ସେ ଅନୁଭବ କଲାନି ।

ବକ୍ ଭାବିଲା ଏ ଗୋଟେ ପ୍ରକାରର ନୂଆ ଆହ୍ୱାନ । ସବୁ ଜିନିଷ ସାମ୍ନା କରିବା ହଉଚି ଜୀବନର ଅସଲ ମଜା । ତେଣୁ ସ୍ଲେଜ୍‌ଗାଡ଼ି ଟଣା କାମକୁ ସେ ଉପଭୋଗ କରିବାକୁ ଲାଗିଲା । ଅଯଥା ମୁହଁ ଶୁଖେଇ ଲାଭ କ'ଣ ?

ପରଦିନ ରାତି ଖିଆପିଆ ସରିଲା ପରେ ବକ୍ ଅନୁଭବ କଲା, ସେ ଯେମିତି ଆସ୍ତେ ଆସ୍ତେ ଅନ୍ୟସବୁ କୁକୁରଙ୍କସହ ସମାନ ପାଲଟି ଯାଉଚି । ସେଠିକାର ସେ



Digitized by srujanika@gmail.com

ହିଂସ୍ର କୁକୁରଗୁଡ଼ାଙ୍କୁ ସାଧାରଣରେ 'ହସ୍କି-କୁକୁର' ବୋଲି କୁହାଯାଏ । ଦେଖିବାକୁ ଭୋକିଲା, ବିକଟାଳ ଅଥଚ ବଳୁଆ । ସ୍ଲେଜଗାଡ଼ି ଟାଣିବା ହେଲା ତାଙ୍କର ମୂଳ କାମ । କାନାଡ଼ାର ଘୋର ବରଫ ଅଞ୍ଚଳରେ ଦେଖାଯାଉଥିବା ଏ ଜାତିର କୁକୁରଙ୍କୁ କେହି କେହି 'ଏସ୍କିମୋ-କୁକୁର' ମଧ୍ୟ କହନ୍ତି ।

ଏବେ ବକ୍ ଆଉ ହସ୍କି- କୁକୁରଙ୍କ ଭିତରେ କିଛି ଫରକ ନାହିଁ । କାରଣ ସମସ୍ତେ ସେଇ ଏକାକାମ କରୁଚନ୍ତି । ଅବଶ୍ୟ ଏ ଦିଗରେ ସ୍ପିଜ୍ ଏବଂ ଡାଭେ ଆଗରୁ ବେଶ୍ କିଛି ଅଭିଜ୍ଞତା ହାସଲ କରିସାରିଥିଲେ । ବକ୍ ଜାଣେ ଆଗକୁ ତା'କୁ ଅନେକ କଥା ଶିଖିବାକୁ ଅଛି । ଜୀବନର ଅନ୍ୟ ନାମ ତ ଶିକ୍ଷା । ଶିକ୍ଷା ଏବଂ ଅଭିଜ୍ଞତା ମାଧ୍ୟମରେ ହିଁ ଜୀବଜନ୍ତୁମାନେ ଜୀବନକୁ ସାମନା କରିବା ଶିଖନ୍ତି । ସେ ଭାବିଲା ଦିନ କେତୁଟାରେ ବଳକେ ଏସବୁ କଥା ଶିଖି ଯିବନି କି ? ତେଣିକି ସ୍ଲେଜଗାଡ଼ି ଆଗରେ ତାକୁ ଦକ ଦକ ଲାଗିବନି  କି ସେ ଆଉ କାମ କରିବାକୁ ପଛେଇ ଯିବନି ।

ସ୍ପିଜ୍ ଆଉ ଡାଭେ କୋଉ ପାସଙ୍ଗରେ ପଡ଼ିବେ ତା'ର ? ସମୟ ବଳକେ ସବୁ ପ୍ରମାଣ କରିଦେବ ।

କର୍ଲି କିନ୍ତୁ ଏସବୁ କାମକୁ ପାରିବ କି ନାଇଁ କେଜାଣି ? କର୍ଲି କଥା ମନେ ପଡ଼ିବାରୁ ତାକୁ ଦେଖିବାପାଇଁ ସେ ଏଣେତେଣେ ମୁହଁ ବୁଲାଇଲା । ଏତିକିବେଳେ ଦେଖିଲା ଖଣ୍ଡେ ଦୂରରେ ଗୋଟେ ହସ୍କି-କୁକୁର ଆଡ଼କୁ ସେ ଧୀରେ ଧୀରେ ଆଗଉଚି । ଅନ୍ୟ କୁକୁରଟା କର୍ଲି ଚେହେରାର ଅଧାଅଧି ଖଣ୍ଡେହେବ ।

କୁକୁର ହିସାବରେ କର୍ଲି ସବୁବେଳେ ଭଦ୍ର ଏବଂ ଶାନ୍ତ । କିନ୍ତୁ କ'ଣ ହେଲା କେଜାଣି, ସେ ହସ୍କି କୁକୁରଟା କିଛି ଆଭାସ ନ ଦେଇ, ହଠାତ କୁଦାମାରି କର୍ଲିର ଆଖି ପାଖର ଥୋମଣିକୁ କାମୁଡ଼ି ଧରିଲା । ହାଡ଼ ଚୂନା ହୋଇଗଲା ଭଳି କେମିତି ଗୋଟାଏ ମଡ଼ ମଡ଼ ଶବ୍ଦ ହେଲା । ଦେଖିଲାବେଳକୁ କର୍ଲିର ମୁହଁଟା ଆକ୍ଷି ପାଖରୁ ପାଟିଯାଏଁ ଏଡ଼େ ଖଣ୍ଡେ ଜାଗା ମେଲା ହେଇଯାଇଚି ।

ଛି । କୁକୁରମାନେ କ'ଣ ଏମିତି ଆକ୍ରମଣ କରନ୍ତି ? ଇଏତ ଗଧିଆମାନଙ୍କର ଢଙ୍ଗ । କୁଆଡୁ କିଛି ନାଇଁ, ଥିବ ଥିବ ଧପ୍‌କିନା କାମୁଡ଼ି ଦେଇ ହଟିଯିବ ପଛକୁ । ଏଟା କ'ଣ ଭଦ୍ର-କୁକୁରଙ୍କର କାମ ?

ଏତିକିବେଳେ ସ୍ପିଜ୍ କୋଉଠି ଥିଲା, ଅସଭ୍ୟ ଭଳି ଏଡ଼େ ପାଟିଟାଏ କରି ହସିବାକୁ ଲାଗିଲା ।



Digitized by srujanika@gmail.com

ତା' ହସ ଶୁଣି କ୍ୟାମ୍ପର କୁକୁରଯାକ ଜାଗିଗଲେ । ସଭିଏଁ ଦଉଡ଼ି ଆସି ଘେରିଗଲେ ଦୁଇଜଣଙ୍କୁ । କର୍ଲିର ଖଣ୍ଡିଆ ଜାଗାରୁ ଧାର ଧାର ହୋଇ ରକ୍ତ ବୋହି ଯାଉଥାଏ । ତଥାପି ସେ ମାଡ଼ି ଯାଉଥାଏ ରଡ଼ି କରି । ହସ୍କି କୁକୁରଟା କିନ୍ତୁ ଭୀଷଣ ଭାବରେ ଧୂର୍ତ୍ତ । ପୁଣି ଥରେ ବିଜୁଳି ବେଗରେ ଝପଟି ଆସି କର୍ଲିର ମୁହଁକୁ ଝୁଣି ଦେଇ ସେ ହଟିଗଲା ପଛକୁ । କର୍ଲି ତାକୁ ଛୁଇଁ ବି ପାରିଲାନି । ଅନ୍ୟ କୁକୁରଗୁଡ଼ାକ ଚାରିଆଡ଼େ ଛକାଛକି ହେଇ ଅପେକ୍ଷା କରିଥାଆନ୍ତି । ତୃତୀୟ ଥର ଯେତେବେଳେ ହସ୍କି କୁକୁରଟା ଆକ୍ରମଣ କଲା, କର୍ଲି ଆଉ ନିଜ ଗୋଡ଼ରେ ଭରାଦେଇ ଠିଆ ହୋଇ ପାରିଲାନି । ଅତି କରୁଣ ଏବଂ ଅସହାୟଭାବରେ ଗୋଟେ କଡ଼କୁ ଗଡ଼ି ପଡ଼ିଲା । ସେଇ ଯେ ପଡ଼ିଗଲା, ଆଉ ଉଠି ପାରିଲାନି ସେ । ଚାରିପଟେ ଜମା ହୋଇଥିବା ସବୁଯାକ ହସ୍କି କୁକୁର ନିର୍ମମ ଭାବରେ କୁଦି ପଡ଼ିଲେ ତା' ଉପରକୁ ।

ମାତ୍ର କେଇ ମୁହୂର୍ତ୍ତ ଭିତରେ ଭଦ୍ର, ଶାନ୍ତ ଏବଂ ବିଶାଳକାୟ କର୍ଲି ମରି ପଡ଼ିଲା ସେଠି ।

ବକ୍ ନିଜ ଆଗରେ ଏସବୁ କଥା ଘଟିଯିବାର ଦେଖିଲା । ତଥାପି ନିଜ ଆଖିକୁ ବିଶ୍ୱାସ କରିପାରୁ ନ ଥାଏ ସେ । କୁକୁରମାନେ ସତରେ କ'ଣ ଏତେ ହିଂସ୍ର ଏବଂ ଜଘନ୍ୟ ହୋଇପାରନ୍ତି ? ଇଏ କ'ଣ କୁକୁରପଣିଆ ? ଏଇ ସମୟରେ ସ୍ପିଜର୍ ଫେଁ ଫେଁ ହସ ତା' କାନରେ ପୁଣି ଥରେ ପଡ଼ିଲା । କ୍ରମେ କ୍ରମେ ପ୍ରକୃତିସ୍ଥ ହେଉଥିଲା ସେ ।

ଏ ଜାଗା ସତରେ ଭୟଙ୍କର ଜାଗା । ସବୁଆଡ଼େ ଖାଲି ହିଂସା ଆଉ ହିଂସା । ସ୍ନେହ, ଆଦର, ନୀତି, ନିୟମର ପ୍ରଶ୍ନ ନାହିଁ । ଯେ ଯେତେ ଅନ୍ୟାୟ କରିପାରିଲା ଏଠି । ଥରେ ତଳେ ପଡ଼ିଗଲ ମାନେ ତମେ ତିନି ପାଞ୍ଚିରୁ ଗଲ । କେହି ପଦେ ଆହା କରିବାକୁ ବି ନାହିଁ ।

ମନକୁ ଦୃଢ଼ କଲା ବକ୍ । ନା, କର୍ଲି ଯେମିତି ମଲା ସେ ସେମିତି ନିଜକୁ ମରିବାକୁ ଦେବନି କେବେ । ସ୍ପିଜର ସେ ଅସହଣି ଫେଁ ଫେଁ ହସ, ତାର ମନେ ପଡ଼ିଯାଉଥାଏ ତୁହାକୁ ତୁହା । ନାକ, କାନ, ତାର ତାତି ଯାଉଥାଏ ।

ବକ୍ ଏବେ ସ୍ପିଜକୁ ପ୍ରଚଣ୍ଡ ଘୃଣା କରୁଥିଲା । ଇସ୍ କି ଜଘନ୍ୟ ସେ କୁକୁରଟା ? ଟିକିଏ ବି ଭଦ୍ରାମି ନାଇଁ ତା' ପାଖରେ !!

ପୂରା ସକାଳଟା ଅନ୍ୟ କେଉଁଠାରୁ କୁକୁରଟିଏ କିଣିବାରେ ବ୍ୟସ୍ତ ରହିଲେ ପେରଲଟ୍ । କର୍ଲି ମରିଯିବା ପରେ ଏବେ ତା' ଜାଗାରେ ଆଉ ଗୋଟିଏ କୁକୁର



Digitized by srujanika@gmail.com

ଦରକାର । ନ ହେଲେ ସରକାରୀ ଚିଠିପତ୍ର ପଠାପଠିରେ ଅଯଥା ବିଳମ୍ବ ହୋଇଯିବ । ପେରଲଟ୍ ବଡ଼ ମାପଚୁପା ଲୋକ । କାମର ଗୁରୁତ୍ୱ ସେ ଠିକ୍ ବୁଝନ୍ତି । ଅତଏବ ଉପରବେଳା ସୁଦ୍ଧା ଲାଗିପଡ଼ି ସେ ପୁଣି ଦୁଇଟା କୁକୁର କୋଉଠୁ ଆଣି ହାଜର ହେଇଗଲେ ।

କ୍ୟାମ୍ପରେ ପହଞ୍ଚୁ ପହଞ୍ଚୁ ସେ କହିଲେ ବୁଝିଲ ଫ୍ରାଙ୍କୋଇସ୍, ଆଜି ତ ମୁଁ ଏ ଦିଇଟା ନେଇ ଆସିଲି, କାଲି କିନ୍ତୁ ଜଣେ ଲୋକ ଆଉ ଗୋଟେ କୁକୁର ଆଣି ଏଠିକୁ ଆସିବ ।

ଫ୍ରାଙ୍କୋଇସ୍ ସାଙ୍ଗେ ସାଙ୍ଗେ ନୂଆ କୁକୁର ଦୁଇଟାଙ୍କୁ ପରୀକ୍ଷା କରିବାରେ ଲାଗି ପଡ଼ିଲେ । କୁକୁର ଦୁଇଜଣଙ୍କର ନାଆଁ 'ବିଲି' ଏବଂ 'ଜୋ' । ଦୁଇଜଣଯାକ ହସ୍କି କୁକୁର ଏବଂ ଦୁଇ ଭାଇ ମଧ୍ୟ । ମାତ୍ର ବକ୍ ଅନୁମାନ କରିପାରିଲାନି ଯେ ସେମାନେ ଦୁଇ ଭାଇ । କାରଣ ଚେହେରା ଏବଂ ବ୍ୟବହାରରେ ଜଣେ ଆଉ ଜଣକ ଠାରୁ ଥିଲା ପୂରାପୂରି ଅଲଗା ।

'ବିଲି'ର ହାବଭାବ ଠିକ୍ କର୍ଲି ଭଳି । ଶାନ୍ତଶିଷ୍ଟ ଏବଂ ବନ୍ଧୁତ୍ୱପୂର୍ଣ୍ଣ । କିନ୍ତୁ 'ଜୋ'ର ମୁହଁଟା ସବୁବେଳେ ଖିଙ୍କାରିଲା ପରି ଦେଖା ଯାଉଥାଏ । ତା' ଆଖି ଦୁଇଟା ବି ସବୁବେଳେ ରାଗ ଜରଜର ।

ସ୍ପିଜ୍ ସେମାନଙ୍କୁ ଦେଖୁ ଦେଖୁ ନିଜ ବଡ଼ପଣିଆ ଜାହିର୍ କରିବାପାଇଁ ମାଡ଼ିଗଲା ଆଗକୁ । 'ବିଲି' ଉପରକୁ ଝାମ୍ପିପଡ଼ି ମାଡ଼ି ବସିଲା ତାକୁ । ବିଚରା 'ବିଲି' କିଛି ପ୍ରତିବାଦ କଲାନି । ଓଲଟି ଲାଞ୍ଜ ଜାକି କ୍ୟାଉଁ କ୍ୟାଉଁ ହୋଇ ଗଡ଼ିଗଲା ତଳେ । ତଥାପି ବୀରଦର୍ପରେ ସ୍ପିଜ୍ ଦୁଇ ଚାରି ପୁଳା ତା' ଫଡ଼ିଆକୁ କାମୁଡ଼ି ପକେଇଲା । ତା'ପରେ 'ଜୋ' ଆଡ଼କୁ ମୁହଁ ବୁଲାଇଲା ସେ ।

'ଜୋ' ସହଜେ ଦବିଯିବା କୁକୁର ନୁହେଁ । ସେ ଦୃଢ଼ଭାବେ ସାମ୍ନା କଲା ସ୍ପିଜ୍‌କୁ । ଦେଖାଯାଉ କ'ଣ ହଉଚି ! ସ୍ପିଜ୍ ଦାନ୍ତ ନିକୁଟି ଖିଙ୍କାରି ହେଇ 'ଜୋ' ଚାରିପଟେ ଚକ୍‌କର କାଟୁଥାଏ । କିନ୍ତୁ 'ଜୋ', ଆଖି ତରାଟି ପାଟି ମେଲେଇ ତାକୁ ଘୂରି ଘୂରି ମୁକାବିଲା କରିବାରେ ପଛୋଉ ନ ଥାଏ । 'ଜୋ' ମନରେ ଭୟ ଥାଏ, ହେଲେ ଏଡ଼େ ସହଜରେ ହଟିଯିବ କାହିଁକି ? ମରିବ ପଛକେ, ଶେଷଯାଏ ଲଢ଼ିବ ସେ ।

'ସ୍ପିଜ୍', 'ଜୋ'ର ମନକଥା ଜାଣିପାରି ଆଉ ଆଗକୁ ଆଗେଇବାକୁ ମନ କଲାନି । କିନ୍ତୁ ମୁହଁର ଟାଣପଣ ପୁଣି ରଖିବ ତ ? ତେଣୁ ସତେ ଯେମିତି ଗଣ୍ଡଗୋଳ



Digitized by srujanika@gmail.com

କରିବା ତା'ର ଉଦ୍ଦେଶ୍ୟ ନୁହେଁ, ସେଇଭଳି ପେଖନା କରି ସେ ଚାଲି ଆସିଲା ସେଠୁ । ଏବଂ ପୁଣି ଧାଇଁଲା ବିଚରା 'ବିଲି'ଆଡ଼େ ।

ପରଦିନ କ୍ୟାମ୍ପରେ ଖରାବେଳ ଖିଆପିଆ ପୂର୍ବରୁ ଆଗର ବରାଦ ଅନୁସାରେ ଜଣେ ଲୋକ ଗୋଟିଏ କୁକୁର ଆଣି ପେରଲଟ୍‌ଙ୍କ ପାଖରେ ପହଞ୍ଚିଲା । କୁକୁରଟି ଦେଖିବାକୁ ଲମ୍ବା କିନ୍ତୁ ପତଳା । ଗୋଟାଏ ଆଖି କଣା । କେମିତି କେଜାଣି ନଷ୍ଟ ହୋଇଯାଇଛି ଅନେକ ଦିନ ଆଗରୁ । ମୁହଁସାରା ମାଡ଼ଗୋଳଯୋଗୁଁ ଖଣ୍ଡିଆ ଖାବରା ଚିହ୍ନରେ ଭରା ।

ତା'ର ନାଁ ହଉଚି 'ସୋଲେକ୍‌ସ' । କୁକୁର ଧରି ଆସିଥିବା ଲୋକଟି ପେରଲଟ୍‌ଙ୍କୁ ବୁଝେଇଲା ଭଳି କହିଲା - ''ଜାଣିଛ ନା, 'ସୋଲେକ୍‌ସ'ର ଅର୍ଥ ହେଉଚି 'ମହାକ୍ରୋଧୀ ?''

'ସୋଲେକ୍‌ସ' ସେଠି ପହଞ୍ଚି ଅନ୍ୟ କୁକୁରଙ୍କ ମେଳ ଭିତରକୁ ଧୀରେ ଧୀରେ ନିଧଡ଼କ ଭାବରେ ଚାଲିଲା । କିଏ ଆସିଲା ବୋଲି ବାସ୍ନା ବାରି ସ୍ପିଜ୍ ଧଡ଼ପଡ଼ ହେଇ ଠିଆ ହୋଇ ପଡୁଥିଲା, ମାତ୍ର 'ସୋଲେକ୍‌ସ'କୁ ଦେଖି ସେ ବସି ରହିଲା ଚୁପ୍‌ଚାପ୍ । 'ନାଇଁରେ ବାବା ୟା ସାଙ୍ଗରେ ଲାଗିଲେ ହଇରାଣରେ ପଡ଼ିବା କଥା ।'

କିନ୍ତୁ ପରେ ଦୁର୍ଯୋଗକୁ 'ସୋଲେକ୍‌ସ' ସହିତ 'ବକ୍'ର ମୁହାଁମୁହିଁ ହେଇଗଲା । ଅବଶ୍ୟ ସେଇଟା ଥିଲା ପ୍ରଥମ ଏବଂ ଶେଷ । 'ଡାଭେ' ଭଳି 'ସୋଲେକ୍‌ସ'ର ମତିଗତି । କାହା କଥାରେ ମୁଣ୍ଡ ନ ଖେଳାଇ ସେ ଚୁପ୍‌ଚାପ୍ ରହିବାକୁ ଚାହେଁ । ତା' ସମ୍ପର୍କରେ ସବୁଠାରୁ ଅବାଗିଆ କଥାଟି ହେଲା ଯେ ସେ କୌଣସି କୁକୁରକୁ ତା'ର କଣା ଆଖିପଟେ ଆସିବାକୁ ଦବନି । ନାଇଁ ଯଦି କିଏ ଭୁଲ୍‌ରେ ପଳେଇ ଆସିଲା ତେବେ ତା' କଥା ସଇଲା । 'ବକ୍' ସେକଥା କେମିତି ଜାଣନ୍ତା ? ସେଦିନ ରାତିରେ ଅଜାଣତରେ ସେ 'ସୋଲେକ୍‌ସ'ର କଣା ଆଖିପଟେ ଚାଲିଗଲା । ଏତିକିରେ 'ସୋଲେକ୍‌ସ' ଘାଉଁକିନା ଘୂରିପଡ଼ି ମାଡ଼ି ବସିଲା ବକ୍‌କୁ । କାନ୍ଧର ହାଡ଼ ଯାଏଁ ତା'ର ମୁନିଆ ଦାନ୍ତକୁ ଗଡ଼େଇ ଦେଲା ।     'ବକ୍' ବିଚରା କିଛି କରି ପାରିଲାନି ତା'ର ।

ପେରଲଟ୍, 'ସୋଲେକ୍‌ସ'ର ବଦ୍‌ରାଗ ବିଷୟରେ ଆଗରୁ ଜାଣି ଯାଇଥିଲେ । ତେଣୁ ସେ ଚାବୁକ୍ ଧରି ସାଙ୍ଗେ ସାଙ୍ଗେ ଦଉଡ଼ି ଆସିଲେ ସେଠାକୁ । ତାଙ୍କୁ, ଚାବୁକ୍-ହାତରେ ଦେଖି ସବୁଯାକ କୁକୁର ଚୁପ୍‌ଚାପ୍ ଠିଆ ହୋଇଗଲେ । ମ୍ୟାଡ଼କୁ କାହାର ଭୟ ନାହିଁ ?



Digitized by srujanika@gmail.com

ବକ୍ ସିନା ଜାଣି ନ ଥିଲା ବୋଲି କାମୁଡ଼ା ଖାଇଲା, ହେଲେ ଏବେ ଅନ୍ୟ କୁକୁରମାନେ ଜାଣିଗଲେ ଯେ 'ସୋଲେକ୍‌ସ'ର କଣା ଆଖି ପଟେ ଯିବା ଭାରି ବିପଦ । ତେଣୁ ସେମାନେ ସମସ୍ତେ ହୁସିଆର ହୋଇଗଲେ ।

କାନ୍ଧଟା ଖଣ୍ଡିଆ ହୋଇଯାଇଥିବାରୁ ଧକ୍ ଧକ୍ କରୁଥାଏ । ସେଦିନର ପାଗ ମଧ୍ୟ ଅନ୍ୟ ଦିନ ଅପେକ୍ଷା ଅଧିକ କୋହଲା ଏବଂ ଥଣ୍ଡା । ମଝାଥରା ଶୀତୁଳିଆ ପବନ ବୋହୁଥାଏ ସିରିସିରି ହୋଇ । ବକ୍‌କୁ ବହୁତ କଷ୍ଟ ଲାଗୁଥାଏ । କୋଉଠୁ ଟିକିଏ ଉଷୁମ ମିଳିବ ବୋଲି ବ୍ୟସ୍ତ ହୋଇ ପଡୁଥାଏ ସେ ।

ଏତିକିବେଳେ ପେରଲଟ୍ ଓ ଫ୍ରାଙ୍କୋସ୍ ଶୋଇଥିବା ତମ୍ବୁରେ ମହମବତି ଜଳୁଥିବାର ଦେଖାଗଲା । ଟିକିଏ ଆଶା ସଞ୍ଚରିଲା ମନରେ । ଧୀରେ ଧୀରେ ତମ୍ବୁର ପରଦା ଆଡ଼େଇ ବକ୍ ପଶିଗଲା ଭିତରକୁ । ଆଃ ଭିତରଟା କି ଆରାମ୍ ! କିନ୍ତୁ ବକ୍ ଭିତରକୁ ପଶିଲା ବେଳେ ସେ ଦୁଇ ଜଣ ଚେଇଁଥିଲେ ବୋଧେ । ତାକୁ ଦେଖି ସେମାନେ ପାଟିକରି ଉଠିଲେ । ତମ୍ବୁ ଭିତରେ ଥିବା ବାସନ କୁସନ ଫୋପାଡ଼ିଲେ ତା' ଉପରକୁ । ବକ୍ ବିଚରା ଏବେ କରେ କ'ଣ ? ତମ୍ବୁ ଭିତରୁ ପ୍ରାଣବିକଳରେ ପଳେଇ ଆସିଲା ବାହାରର ବରଫାବୃତ ଅଞ୍ଚଳକୁ ।

ଓଃ କି ଥଣ୍ଡା ! ପ୍ରାୟ ଘଣ୍ଟେକାଳ ସେ ଏଠି ସେଠି ଘୂରି ବୁଲିଲା, କାଳେ କୋଉଠି ଟିକେ ଗରମ ଥାନ ମିଳିଯିବ ପରା ! ହେଲେ କାହିଁ ? ସବୁ ଜାଗା ତ ଆଗରୁ ଅନ୍ୟ କୁକୁରମାନେ ମାଡ଼ି ବସିଛନ୍ତି । ପାଖକୁ ଯାଉ ନ ଯାଉଣୁ ଖିଙ୍କାରି ଆସୁଛନ୍ତି ସଭିଏଁ । ବକ୍ କାହିଁକି ଛାଡ଼ନ୍ତା ? ପାଟି ମେଲେଇ, ମୁହଁ ଛିଞ୍ଚାଡ଼ି ସେ ବି ପ୍ରତ୍ୟୁତ୍ତର ଦେଲା ।

ବେଳକୁ ବେଳ ବରଫ ପଡୁଥାଏ ଅଧିକରୁ ଅଧିକ । ନିସ୍ତେଜ ଅନୁଭବ କରୁଥାଏ ବକ୍ । କାନ୍ଧର କାମୁଡ଼ା ଘା'ଟା ଏବେ ବେଶି କଷ୍ଟ ଦେଉଥାଏ ତାକୁ ।

ହଠାତ୍ ତା' ମୁଣ୍ଡକୁ ଗୋଟେ କଥା ଜୁଟିଲା । ନିଜର ଘଣି କୁକୁରମାନେ କୋଉଠି ଅଛନ୍ତି ତାଙ୍କୁ ନ ଖୋଜି ସେ ଏମିତି ବୁଲୁଚି କାହିଁକି ? ନିଶ୍ଚୟ ସେମାନେ କୋଉଠି ଗୋଟେ ଉଷୁମ ଥାନ ଦେଖି ଲାଖି ଯାଇଥିବେ । ଏଥର ସେମାନଙ୍କୁ ଖୋଜି ବାହାର କରିବାକୁ ଚେଷ୍ଟା କଲା ବକ୍ । ମାତ୍ର ଆଚମ୍ବିତ କଥା, କାହାର ଜଣକର ସୁଦ୍ଧା ପତ୍ତା ମିଳିଲାନି । ଶୀତରେ ଦେହ ଠକ୍ ଠକ୍ ଥରୁଥାଏ । ଲାଞ୍ଜଟା ଓହଳି ପଡ଼ିଥାଏ ତଳକୁ । ତଥାପି ଖୋଜି ଚାଲିଥାଏ ବକ୍ । କାଳେ କିଏ କୋଉଠି ଦେଖା ହୋଇଯିବ ପରା ।



Digitized by srujanika@gmail.com

ପେରଲଟ୍‌ଙ୍କ ତମ୍ବୁ ପାଖ ଦେଇ ପୁଣି ଥରେ ଯାଉ ଯାଉ ପାତଳା ବରଫର ଚଟାଣ ହଠାତ୍ ଭାଙ୍ଗିଯାଇ ଗୋଡ଼ ଗଳିଗଲା ସେଇଠି । ହାମୁଡ଼ି ପଡ଼ିଲା ସେ । ଲାଗିଲା ଯେମିତି ଗୋଡ଼ ପାଖରେ କ'ଣ ଗୋଟେ ହଲଚଲ ହଉଚି । ଗାଉଁ ଗାଉଁ ରଡ଼ି କରି ସେ ହଟି ଆସିଲା ପଛକୁ । କ'ଣଟାଏ କେଜାଣି ? ଏତିକିବେଳେ କାହାର ବନ୍ଧୁତ୍ୱପୂର୍ଣ୍ଣ କୁଉଁ କୁଉଁ ସ୍ୱର ଶୁଣି ବକ୍ ଆଶ୍ୱସ୍ତ ହୋଇ ନିଠେଇ ଚାହିଁଲା ସେ ଆଡ଼କୁ ।

ବରଫ ଭାଙ୍ଗି ଗାତ ହୋଇଯାଇଥିବା ଥାନରେ ମୁହଁ ରଖି ତଦାରଖ କଲାବେଳକୁ ଦମକାଏ ଉଷୁମ ପବନ ଆସି ବାଜିଲା ତା କାନରେ । ଆରେ, ଏ ଭିତରୁ ଗରମ ହାଓ୍ୱା ଆସୁଛି କେମିତି ? ଏଥର ମୁହଁ ଗଳେଇ ଅନିଷା କଲା ବକ୍ । ଦେଖିଲାବେଳକୁ ବରଫର ଗାଡ଼ ଭିତରେ ଗୋଟାଏ ପେଣ୍ଡୁଭଳି କୁଞ୍ଚିକାଞ୍ଚି ହେଇ ଶୋଇଚି 'ବିଲି' । ବାଃ ବଡ଼ ଆରାମ ତ !!

ସାଙ୍ଗେ ସାଙ୍ଗେ ବକ୍ ନିଜପାଇଁ ଗୋଟେ ଜାଗା ବାଛି ନେଇ ସୁନ୍ଦର ଏକ ଗାଡ଼ କରି ଦେଲା ବରଫରେ । ଅତି ଅଳ୍ପ ପରିଶ୍ରମରେ ଖୁବ ଶୀଘ୍ର ଏ କାମଟି ହୋଇଗଲା । ତା'ପରେ ସେଇ ନୂଆଗାଡ଼ରେ ଜାକିଜୁକି ହୋଇ ଶୋଇଗଲା ସେ । ମାତ୍ର କେଇମିନିଟ୍ ଭିତରେ ନିଜ ଦେହର ଉଷୁମ ଭରିଗଲା ସେ ଜାଗାରେ । ଉପରୁ ବରଫ ପଡୁଥାଏ ଝୁର୍ ଝୁର୍ ହୋଇ । ଧୀରେ ଧୀରେ ସେଠି ଗୋଟିଏ ଗୁମ୍ଫା ତିଆରି ହୋଇଗଲା । ବକ୍ ଏବେ ତା'ର ଆପଣା ହାତରେ ତିଆରି ବରଫ ବସାଟିରେ ଶୋଇଗଲା ନିଶ୍ଚିନ୍ତରେ, ନିଘୋଡ଼ ନିଦରେ । ଯା' ହଉ ଏତେବେଳକେ ରକ୍ଷା ମିଳିଲା, ଏ କଲିଜାଥରା ଥଣ୍ଡାରୁ ।

ରାତି ସାରା ସେଇମିତି ବରଫ ପଡୁଥାଏ । ସକାଳେ କ୍ୟାମ୍ପରେ ଯେତେବେଳେ ହଇଚଇ ଲାଗିଲା ସେତିକିବେଳେ ଯାଇ ନିଦ ଭାଙ୍ଗିଲା ବକ୍‌ର । ନିଦ ଭାଙ୍ଗିଲାରୁ ସେ ବାହାରକୁ ବାହାରିବାପାଇଁ ବାଟ ଖୋଜିଲା । ହେଲେ ଏ କ'ଣ ? ସେ ଯେ ବରଫରେ ପୂରାପୂରି ପୋତି ହୋଇ ପଡ଼ିଚି । କିଛି ସମୟପାଇଁ ସେ ହଡ଼ବଡ଼େଇ ଗଲା । ଚାରିପଟେ ବରଫ ଆଉ ବରଫ । ତାରି ଭିତରେ ପୋତି ହୋଇ ପଡ଼ିଚି ସେ । କାହିଁକି କେଜାଣି ଗୋଟିଏ ଅଜଣା ଭୟ ଖେଳିଗଲା ତା' ଦେହରେ । ଶିହରି ଉଠିଲା ବକ୍ । ଏ ଭିତରୁ ଆଉ ବାହାରି ପାରିବନି କି ? ଜଙ୍ଗଲି ଜନ୍ତୁଟିଏ ଜନ୍ତାରେ ପଡ଼ି ଥରି ଉଠିବାପରି ଥରି ଉଠିଲା ତା'ର ସାରା ଦେହ । ମାତ୍ର ବକ୍ ତ ଜଙ୍ଗଲ ଜୀବ ନୁହେଁ । ସେ ଗୋଟାଏ ସଭ୍ୟ କୁକୁର । ଖୋଲା ମେଲାରେ ବୁଲିବା ତା'ର ଅଭ୍ୟାସ । ତଥାପି ତା' ଭିତରେ ଛପି ରହିଥିବା ଜଙ୍ଗଲି ପ୍ରବୃତ୍ତି ହଠାତ୍ ଚେଇଁ ଉଠିଲା ଯେମିତି । କିଏ ସତେ ଅବା କାନପାଖରେ କହିଦେଲା, ବକ୍ ଏତେ ସମୟ ଏମିତି ପୋତିହୋଇ



Digitized by srujanika@gmail.com

ରହିଲେ ତୋ' ଜୀବନ ରହିବନି । ଜନ୍ତାରେ ପଡ଼ି ମରିବା ପରି ଛଟପଟ ହୋଇ ତୁ' ମରିଯିବୁ । ବାହାରିଆ, ବାହାରିଆ ଭିତରୁ । ଭାଙ୍ଗିଦେ ବରଫ ବସାଟାକୁ ।

ବକ୍ ଏଥର ସବୁ ଶକ୍ତିକୁ ଠୁଳକଲା ନିଜ ଭିତରେ । କାନ୍ଧ ଆଉ ବେକ ପାଖର ଲୋମ ଠିଆ ଠିଆ ହୋଇଗଲା । ଚାରି ଗୋଡ଼ରେ ଠେସ ଦେଇ ନିଜକୁ ଦୃଢ଼ କରି ଠିଆ ହେଲା ସେ । ଗୋଟିଏ ଝାଙ୍କରେ ଉହୁଙ୍କି ଉଠିବା ମାତ୍ରେ ଉପରେ ଜମିଥିବା ବରଫ ଚୂରମାର୍ ହୋଇଗଲା । ଭାଙ୍ଗିଗଲା ବରଫର ବସା । ସେ ଆସି ଠିଆ ହୋଇଗଲା ଉପରେ । ସେତେବେଳକୁ ସକାଳର କଅଁଳ ଆଲୁଅ ଚାରିଆଡ଼େ ବିଛାଡ଼ି ପଡ଼ିଲାଣି ।

କ୍ୟାମ୍ପରେ ଯାଇ ବକ୍ ଠିକଣା ସମୟରେ ପହଞ୍ଚିଗଲା । ତା'କୁ ଦେଖି ଫ୍ରାଙ୍କୋସ, ପେରଲଟ୍‌ଙ୍କୁ କହିଲେ ହେଇଟି ବକ୍ । ତୁମେ ଯା'କୁହ ଭାରି ବୁଦ୍ଧିଆ ଆମର ଏଇ ବକ୍ । ଦେଖୁନ ବରଫ ଅଞ୍ଚଳରେ ଖାପ ଖୁଆଇ ଚଳିବାର ସବୁ ବାଗ ଶାଗ କେମିତି କେତେ ଶୀଘ୍ର ସେ ଶିଖିଗଲାଣି !

ଏ ଭିତରେ ପେରଲଟ୍ ଆଉ ତିନିଟା ହସ୍କି କୁକୁର କୋଉଠୁ କିଣି ଯୋଗାଡ଼ କରି ସାରିଥିଲେ । ଅଳ୍ପ ସମୟ ଭିତରେ ସେ ଏବଂ ଫ୍ରାଙ୍କୋସ୍ ମିଶି ନଅଟାଯାକ କୁକୁରଙ୍କୁ ସ୍ଲେଜ୍‌ଗାଡ଼ିରେ ଯୋଚିଦେଲେ । ସୋଲେକ୍‌ସ ଏବଂ ଡାଭେଙ୍କ ମଝିରେ ରହିଲା 'ବକ୍' । ପୂର୍ବ ଭଳି ଡାଭେ ରହିଲା ସବା ପଛରେ । ସ୍ଲେଜ୍‌ଗାଡ଼ିକୁ ଲାଗି । ବକ୍‌କୁ ନୂଆ ନୂଆ ଲାଗୁଥାଏ । ଆଜି ଗାଡ଼ିରେ, ପୂରା ଦଳେ କୁକୁର ଯୋଚା ହେଇଚନ୍ତି । 'ଡାଭେ' ଆଉ 'ସୋଲେକ୍‌ସ'ଙ୍କର ହାବଭାବରେ ବି ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟ କରୁଥାଏ ସେ । ଅନ୍ୟଦିନ ପରି ସେ ଦୁହେଁ ଆଜି ଖାପଛଡ଼ା ଜଣାଯାଉ ନାହାନ୍ତି । ଦଳଗତ କାମପାଇଁ ଉଛୁଳି ଉଠୁଛନ୍ତି ଦୁଇଜଣ ସାରା । ଗାଡ଼ି ଟଣାରେ ଯେମିତି ଟିକିଏ ବି କିଛି ଗଡ଼ବଡ଼ ନ ହୁଏ, ସେଥିପାଇଁ ବଡ଼ ସାବଧାନ ଜଣାପଡୁଥାନ୍ତି ସେମାନେ ।

'ଡାଭେ' ଏବଂ 'ସୋଲେକ୍‌ସ' ଦୁହେଁ ବଡ଼ ଅଭିଜ୍ଞ କୁକୁର । ଗାଡ଼ି ଟଣାରେ ଉଭୟେ ଦୋରସ୍ତ । କୋଉଠି ବରଫର ଚଟାଣ ଫସଫସ ବା ଟାଣ ସେମାନେ ଠିକ୍ ଠଉରେଇ ପାରନ୍ତି । ସେଇ ଅନୁସାରେ ନିଜର ଗତି ଓ ଟାଣିବାର ଢଙ୍ଗକୁ ବଦଳେଇ ଦିଅନ୍ତି ସେମାନେ । ଅନ୍ୟ କୁକୁରଙ୍କଦ୍ୱାରା କୋଉଠି ଟିକିଏ ବିଳମ୍ବ କି ଭୁଲ ବୁଝାମଣା ହେଲେ ଚିଡ଼ି ଉଠନ୍ତି ସେ ଦୁହେଁ ।

ମନମୁନ ଲଗେଇ ବକ୍ ତା' କାମ କରି ଚାଲିଥାଏ । ଯେତେହେଲେ ବି ଗାଡ଼ିଟଣା ବିଷୟରେ ସେ ନୂଆ । ପହିଲେ ପହିଲେ ବେକର ଲଗାମ୍ ଫିତାଟା ବଡ଼



Digitized by srujanika@gmail.com

ଅଡୁଆ କରୁଥିଲା ତା'କୁ । ଗୋଡ଼ରେ ଛନ୍ଦି ହୋଇଯାଉଥିଲା । ଧାଇଁଲାବେଳେ ଅନ୍ୟମାନଙ୍କ ସହ ତାଳଦେଇ ଦଉଡ଼ି ପାରୁ ନ ଥିଲା ସେ ।

କେବେ କେମିତି ଭୁଲ ହୋଇଗଲେ 'ଡାଭେ', ପଛ ଫଡ଼ିଆକୁ କାମୁଡ଼ି ଚେତେଇଦିଏ ତା'କୁ । ନ ହେଲେ ସେ ବୋଧେ ହଡ଼ବଡ଼େଇ ଯାଆନ୍ତା । ଠିକ୍ ରାହା ଧରି ଧାଇଁ ପାରନ୍ତାନି ।

ଲଗାମ୍ ଭିଡ଼ା ହେଲାବେଳେ ସେମିତି, ଠିକଣା ଥାନରେ ଯାଇ ଠିଆ ହେବାରେ ଟିକେ ଓଲମ୍ ବିଲମ୍ ହୋଇଗଲେ, 'ସୋଲେକ୍ସ୍' ମାଡ଼ିଆସେ ଘାଉଁକିନା । ସତେ ଯେମିତି ସେ ମୂରବି ।

କିନ୍ତୁ ଅଳ୍ପ କେତୁଟା ଦିନରେ ବକ୍ ଜାଣିଗଲା ସବୁ କାଇଦା । ଏକ ପ୍ରକାର ସେ ଦୋରସ୍ତ ହେଇଗଲା କାମରେ । କେହି ତାକୁ କାମୁଡ଼ି ଆଉ ଚେତେଇବା ଦରକାର ପଡ଼ିଲାନି । ଗାଡ଼ିଟଣା ଏଣିକି ସହଜ ମନେ ହେଲା ତାକୁ । ଦଳରେ ଥିବା ଅନ୍ୟ କୁକୁରମାନଙ୍କର ମିଳିମିଶି କାମ କରିବା ଓ ମଣିଷ ଦୁଇଜଣଙ୍କର ନିଷ୍ଠା ଦେଖି ସେ ବହୁତ ଉତ୍ସାହିତ ମନେ କରୁଥିଲା ।

ପ୍ରାୟ ନିତି ଗାଡ଼ିଟଣାବେଳେ ପେରାଲ୍ଟ ଆଗେ ଆଗେ ଦଉଡ଼ି ଦଉଡ଼ି ଯାଆନ୍ତି । ଦଉଡ଼ିଲା ବେଳେ ନିଜ ଓସାରିଆ ବୁଟ୍‌ରେ ସେ ଉଚ୍ଚନୀଚ ହେଇ ରହିଥିବା ବରଫକୁ ଚପେଇ ଚପେଇ ଚାଲନ୍ତି । ତେଣୁ ସ୍ଲେଜ୍‌ଗାଡ଼ି ଚାଲିବା ଖୁବ ସହଜ ହୁଏ । ତାଙ୍କର ବରଫ ବିଷୟରେ ଅସାଧାରଣ ଜ୍ଞାନ । କୋଉଠି ବରଫର ସ୍ତର ମୋଟା ଏବଂ କୋଉଠି ପତଳା ବା କୋଉଠି ବିପଦ ଅଛି, ଟିକିଏ ମାତ୍ର ଆଖି ପକେଇ ସେ ଜାଣି ପାରନ୍ତି ସବୁ ।

ସବୁଆଡ଼େ ବରଫ ଆଉ ବରଫ । ତାରି ଉପରେ ଗାଡ଼ିଟଣା ଚାଲିଥାଏ । ଦିନ ଦିନ ଧରି ସଭିଏଁ ଲାଗି ପଡ଼ିଥାଆନ୍ତି କାମରେ । ଏ ଭିତରେ କେତେ ଯେ ତୁଷାର ସ୍ରୋତ, ହିମ ପ୍ରବାହ, ବରଫ କୁଦ ସେମାନେ ପାର ହୋଇଆସିଲେଣି ତା'ର କଳନା ନାହିଁ । କେତେ କେତେ ସୁନାସନ୍ଧାନୀ ଦଳର କ୍ୟାମ୍ପ ଡେଇଁ ଆସିଲେଣି ସେମାନେ । ସୁନା-ସନ୍ଧାନୀମାନେ ନିଘଞ୍ଚ ବରଫ ଭିତରେ ଅପେକ୍ଷା କରି ରହିଚନ୍ତି, କେବେ ବସନ୍ତ ଋତୁ ଆସିବ, ବରଫ ତରଳିବ ଏବଂ ସେମାନେ ବାହାରିବେ କାମକୁ ।

ମାଇଲ ପରେ ମାଇଲ୍ ନିତି ଚାଲିଥାଏ ସ୍ଲେଜ୍‌ଗାଡ଼ି । ଏମିତି ବି ବେଳ ଆସିଲା, ଗୋଟାଏ ଦିନରେ ବକ୍ ଏବଂ ତାର ସାଙ୍ଗମାନେ ଏକାଦିକ୍ରମେ ଚାଳିଶ ମାଇଲ



Digitized by srujanika@gmail.com

ତେଇଁଯାଇ ପାରିଲେ । ସେଦିନ ଖୁସିରେ ହାତତାଳି ଦେଇ ପେରଲ୍‌ଟ କହିଥିଲେ- "ଏଭଳି ସାହସୀ ଏବଂ କାମିକା କୁକୁରଦଳ ମୁଁ ଜୀବନରେ କେବେ ପାଇ ନ ଥିଲି । ବାଃ, ଏଥରକର ଟିମ୍‌ଟି ସତରେ ଚମତ୍କାର ।"

ପ୍ରଶଂସା ଶୁଣି ସବୁ କୁକୁର ଏକ ପ୍ରକାର କୁରୁକି ଉଠିଲେ ମନେ ମନେ । ଏପରିକି 'ଡାଭେ ' ଏବଂ 'ସୋଲେକ୍‌ସ' ବି ଖୁସି ଥିବାର ପ୍ରମାଣ ଦେଇ ଶବ୍ଦ କରିବାକୁ ଲାଗିଲେ ।

ବକ୍ ଏବେ ନିଜ ଭିତରେ ଅଧିକ ଦୃଢ଼ତା ଓ ସହଜଭାବ ଅନୁଭବ କରୁଥିଲା । ମିଳିମିଶି କାମ କରିବାର ମଉଜ ସେ ଅଙ୍ଗେ ନିଭାଉଥିଲା । ବରଫ ଭିତରେ ବସା ତିଆରି କରି ଉଷୁମ ଟାଣିଲାବେଳେ ସେଦିନ ବକ୍ ଖୁବ୍ ଉତ୍ସାହ ପାଇଥିଲା ନିଜ ଭିତରେ । ଆଜି ଏକା ଦିନକେ ଚାଳିଶ ମାଇଲ୍ ଟପିଯିବାର ଗୌରବ ତାକୁ ଆହୁରି ଆନନ୍ଦ ବିଭୋର କରି ପକାଉଥିଲା ।

ପେରଲ୍‌ଟଙ୍କର କଥା 'ଚାଳିଶ ମାଇଲ' ଓ 'କାମିକା କୁକୁରଦଳ' ପ୍ରତିଧ୍ୱନିତ ହେବାପରି ତୁହାକୁତୁହା ଶୁଣାଯାଉଥିଲା ତା'ର କାନକୁ ।

ଏଇଭଳି ଦିନ ପରେ ଦିନ ଗଡ଼ି ଚାଲିଥାଏ ।

ହେଲେ ଦୁର୍ଭାଗ୍ୟ ଏତିକି ଯେ ବକ୍‌କୁ ଭୋକ ଲାଗୁଥାଏ ସବୁବେଳେ । ହେମାଳ ଛାତିଥରା ବରଫରେ ମାଇଲ୍ ମାଇଲ୍ ଓଜନିଆ ସ୍ଲେଜ୍‌ଗାଡ଼ି ଟାଣିବାଯୋଗୁଁ ତାକୁ ମିଳୁଥିବା ଖାଦ୍ୟ କୋଉ ଛଟକରେ ହଜମ ହୋଇଯାଏ । ଯେତିକି ମିଳେ ସେତକ ତାକୁ ଯଥେଷ୍ଟ ହୁଏନା । ଖାଇ ସାରିବାର ମାତ୍ର ଦୁଇ ଚାରି ଘଣ୍ଟା ପରେ ପେଟ ପୁଣି କଁ କଁ ଡାକେ । ସବୁଦିନେ ଗାଡ଼ିଟଣା କାମ ଶେଷରେ ପାଖାପାଖି ଦେଢ଼ ପାଉଣ୍ଡ ଶୁଖିଲା ସାଲମନ୍ ମାଛ ସେ ପାଏ । ଅନ୍ୟ କୁକୁରମାନେ ତା'ପରି ଏତେ ବିଶାଳକାୟ ନୁହନ୍ତି । ପୁଣି ସେମାନେ ବି ଆଗରୁ ନିଜକୁ ଏ କଠିନ ଜୀବନ ସହିତ ଖାପଖୁଆଇ ଆସିଛନ୍ତି । ତେଣୁ ଗୋଟେ ପାଉଣ୍ଡ ମାଛରେ ସେମାନଙ୍କର କାମ ଚଳିଯାଏ । ଅଥଚ ଦେଢ଼ ପାଉଣ୍ଡ ମିଳିଲେ ବି ବକ୍‌ର ଭୋକିଲା ରହିବା ସାର ହୁଏ ।

ଆଗ ଆଗ ବେଶ୍ କିଛି ଦିନପାଇଁ ବକ୍ ସେଇ ଦେଢ଼ ପାଉଣ୍ଡ ତକ ମଧ୍ୟ ପୂରାପୂରି ଖାଇବାକୁ ପାଇପାରୁ ନ ଥିଲା । କାରଣ ଅନ୍ୟମାନଙ୍କ ପରି ଏମିତି ଗପାଗପ୍ ଗିଳି ପକେଇବାରେ ସେ ଅଭ୍ୟସ୍ତ ନୁହେଁ । ଅତଏବ ସେଇ ସୁଯୋଗରେ ଅନ୍ୟମାନେ



Digitized by srujanika@gmail.com

ତା ମୁହଁ ପାଖରୁ ଆସି ଖାଇବା ଛଡ଼େଇ ନିଅନ୍ତି । କ'ଣ କରିବ ସେ ବିଚରା । ସେତିକିବେଳେ ତ ସେ ମୁହଁରେ ଏଣେ ପୂରେଇଥାଏ ମେଞ୍ଚେ ।

ଏମିତିରେ ବକ୍ ଟିକେ ମଠେଇ ମଠେଇ ଖାଏ । ସେଇଟା ତା'ର ପ୍ରକୃତି । ତେଣୁ ଅନ୍ୟ କୁକୁରମାନେ ଚଟାପଟ୍ ନିଜର ଭାଗତକ ଖାଇଦେଇ ଆସି ହାଜର ହେଇଯାଆନ୍ତି ତା'ର ଖାଇବା ପାଖରେ । ଏତେ ଜଣଙ୍କ ହାବୁଡ଼ରୁ ନିଜର ଖାଇବାତକ ଏକୁଟିଆ ସେ କେମିତି ବା ସମ୍ଭାଳି ରଖିପାରନ୍ତା ?

ସବୁଦିନେ ଖାଇଲାବେଳେ ଅନ୍ୟ କୁକୁରଙ୍କ ସହ ବକ୍‌ର ଝଗଡ଼ା ହୁଏ । ଏଣେ ଦୁଇଜଣଙ୍କ ସାଙ୍ଗରେ ଲଢୁ ଲଢୁ ଆଉ କିଏ ତା' ଥାଳିରୁ ମାଛ ନେଇ ଛୁ' କରେ । ବଡ଼ ଅସୁବିଧା କଥା । ବକ୍ ଦେଖିଲା ଏଥିରୁ ପାର୍ ହେବାପାଇଁ ମାତ୍ର ଗୋଟିଏ ବାଟ ଅଛି । ସେଇଟା ହେଲା ଯେତେ ଶୀଘ୍ର ସମ୍ଭବ ନିଜେ ଗପାଗପ୍ ଖାଇନବା । ଖାଇଲାବେଳେ ଡେରିକଲେ ଆଉ ଚଳିବନି ।

ବକ୍‌ର ଖାଇବା ଭାଗ, ଅନ୍ୟ କୁକୁରଙ୍କଠାରୁ ଅଧିକା । ହେଲେ ବି, ଜଲ୍‌ଦି ଜଲ୍‌ଦି କେମିତି ଖାଇବ ସେକଥା ଅଭ୍ୟାସ କରିବାକୁ ଲାଗିଲା ସେ ।

ଭୋକ ଦାଉରୁ ମୁକୁଳିବାପାଇଁ ବକ୍ ଆଉ ଗୋଟେ ବାଟ ପାଇଗଲା । ବିଚାରପତି ମିଷ୍ଟର୍ ମିଲର୍‌ଙ୍କ ପାଖରେ ଥିଲେ ଏ କାମ କରିବାପାଇଁ ସେ ନିଶ୍ଚିତ ଲଜ୍ଜା ବୋଧ କରିଥାନ୍ତି । ଧରା ନ ପଡ଼ି ଚୋରି କରିବାର ବାଗ ଶିଖିଗଲା ସେ ।

ତା'ଙ୍କ ଦଳକୁ 'ପାଇକ୍' ବୋଲି ଗୋଟେ ନୂଆ କୁକୁର ଆସିଥାଏ । ଦିନେ ବକ୍ ଦେଖିଲା ଘୁଷୁରି ମାଂସ କାଟୁ କାଟୁ ପେରଲ୍‌ଟ ଯେମିତି କ'ଣ ଗୋଟେ ପଛପଟୁ ଆଣିବାପାଇଁ ମୁହଁ ବୁଲେଇଛନ୍ତି, ଚଟ୍‌କିନା 'ପାଇକ୍' ଖଣ୍ଡେ ମାଂସ ଚୋରେଇ ଆଣିଲା ସେଠୁ । ଏତକ ଦେଖିଲା ପରେ ବକ୍‌ର ଆଉ ଅଧିକ କିଛି ଜାଣିବା ଦରକାର ପଡ଼ିଲାନି । ଠିକ୍ ପରଦିନହିଁ ମାଂସକଟା ଥାନରୁ ଏଡ଼େ ବଡ଼ ମାଂସ ଖଣ୍ଡେ ଧରି ସେ ଖସି ଆସିଲା । ପେରଲ୍‌ଟ ଏକଥା ଜାଣି ଅନେକ ପାଟିତୁଣ୍ଡ କଲେ । ସବୁ କୁକୁରଙ୍କୁ ସନ୍ଦେହ ନଜରରେ ଗାରଡ଼େଇ ଚାହିଁଲେ । ତାଙ୍କର ନଜର କିନ୍ତୁ 'ଡବ୍' ଉପରେ ଅଟକି ରହିଲା । 'ଡବ୍' ଦେଖିବାକୁ ଅପରିଛନିଆ । ତା' କାମ ବି ସେମିତି ଲନ୍ଦଫନ୍ଦିଆ । ତେଣୁ ସେଇ ହିଁ ଚୋରବୋଲି ଭାବି ପେରଲଟ୍ ତାକୁ ଚାବୁକ୍‌ରେ ନିସ୍ତୁକ ପିଟିଲେ । ବକ୍ ଏ ଅନ୍ୟାୟ ଦେଖିଲେ ବି ମନରେ କୌଣସି ଅନୁଶୋଚନା ଅନୁଭବ କଲାନି । ଓଲଟି ନିଜର ପାରିଲାପଣିଆ କଥା ଭାବି ଗର୍ବ ଅନୁଭବ କଲା । କେମିତି ଗୋଟାଏ ରୁକ୍ଷଭାବ ତା' ଭିତରେ ବଳବତ୍ତର ହେଉଥାଏ ଦିନକୁଦିନ ।



Digitized by srujanika@gmail.com

ଧୀରେ ଧୀରେ ବକ୍ ଦେହର ମାଂସପେଶୀ ପଥର ଭଳି ଟାଣ ହେଇଗଲା । କେଉଁଠି କେମିତି ଖଣ୍ଡିଆଖାବରା ହୋଇଗଲେ ଆଉ ବାଧିଲାନି ତାକୁ । ଭଲ ମନ୍ଦ ଯାହା ଯେତେବେଳେ ହାବୁଡ଼ିଲା, ସବୁ ଖାଇ ପେଟ ଭରିକଲା ସେ । କଠିନ ପରିଶ୍ରମ ସାଙ୍ଗକୁ କଠୋର ଜୀବନଧାରା ତାକୁ ଆହୁରି ପଥୁରିଆ କରିଦେଲା । ଦେଖିବା, ଶୁଣିବା, ଶୁଙ୍ଘିବା ଆଦି ସବୁ କାମରେ ତା'ର ଦକ୍ଷତା ବଢ଼ିଗଲା ଢେର ଅଧିକ । ପ୍ରତିକୂଳ ପରିସ୍ଥିତିରେ ପ୍ରତ୍ୟେକ ଜୀବ ଏଇମିତି ପାରଙ୍ଗମତା ହାସଲ କରନ୍ତି । ବକ୍‌ର ବି ସେଇଆ ହେଲା ।

ଏଣିକି ଶୋଇଥିଲେ କ'ଣ କୋଉଠି ଟିକେ ଖୁଡୁକିନା ହେଲେ ସେଇଟା ବିପଦ ନା' ନାଇଁ ସେ ଠିକ୍ ଠଉରେଇ ପାରୁଥିଲା । ଗୋଡ଼ର ଆଙ୍ଗୁଠି ସନ୍ଧିରେ ବରଫ ଜମିଗଲେ ଦାନ୍ତରେ ରେକେଟି ବାହାର କରିବାର କୌଶଳ ବି ସେ ହାସଲ କରି ନେଇଥିଲା ଏ ଭିତରେ । ପବନରୁ ଗନ୍ଧବାରି ଭଲମନ୍ଦ ଜାଣିପାରୁଥିଲା । ପବନ ନ ଥିଲେ ବି ପରିବେଶର ହାବଭାବରୁ ଆଗତ କଥାମାନ କଳନା କରିବା ଆଉ ଦୁଷ୍କର ନ ଥିଲା ତା' ପାଖରେ ।

କେବଳ ଅଭିଜ୍ଞତାରୁ ସେ ଏସବୁ କଥାମାନ ଶିଖିଗଲା ବୋଲି ନୁହେଁ । ବଳେ ବଳେ ତା' ଭିତରେ ଛପି ରହିଥିବା ଅନେକ ଜଙ୍ଗଲୀ ପ୍ରବୃତ୍ତି ଏବେ ଚେଇଁ ଉଠୁଥିଲା ଛାଆଁକୁ ଛାଆଁ ।

ବକ୍‌ର ପୂର୍ବ ପୁରୁଷମାନେ ଥିଲେ ଗଧିଆ ଶ୍ରେଣୀର । ଜଙ୍ଗଲ ଜୀବ ସେମାନେ । କେତେ ଯୁଗଧରି ମଣିଷର ଗୃହପାଳିତ ହୋଇ ରହିଲା ପରେ ଏ ଅବସ୍ଥାକୁ ଆସିଛନ୍ତି ଏବେ । ସେମାନେ ସଭ୍ୟ ପାଲଟିଛନ୍ତି । ହେଲେ ପ୍ରବୃତ୍ତି ହଜି ନାଇଁ ଅବଚେତନରୁ । ଘୋର ଅରଣ୍ୟରେ ଦଳ ଦଳ ହେଇ ରହୁଥିବା ଆଦିମ କୁକୁରମାନଙ୍କର କଥା କାହିଁକି କେଜାଣି, ମନେ ପଡ଼ିଯାଏ ବକ୍‌ର । ସେ ଭାବନା ତା'କୁ ଅସ୍ତବ୍ୟସ୍ତ କରି ପକାଏ । ଶିକାର ପଛରେ ଧାଇଁବାର ଅଦମ୍ୟ ପିପାସା ବେଳେବେଳେ ତା' ଭିତରେ ଜାଗରିତ ହୁଏ । କଞ୍ଚାମାଂସ ଓ ରକ୍ତର ବାସ୍ନାରେ ତାତି ଉଠେ ଦେହ ମନ । ଅତଏବ ଲଢ଼ିଲାବେଳେ ଗଧିଆ ଭଳି ଖିଙ୍କାରି ଉଠି କାହାକୁ ଦାନ୍ତ ଲଗେଇ ଝୁଣି ଦେବାରେ ସେ ଏବେ ପାଉଥିଲା ଏକ ଅକୁହା ଆନନ୍ଦ । ଅକୁହା ଅଥଚ ଅତି ପରିଚିତ ତଥା ନିବିଡ଼ ଆନନ୍ଦ ।

ରାତି ଗଭୀରହେଲେ ବକ୍ ନିଜ ଭିତରେ ଏକ ବେଦନା ଅନୁଭବ କରେ । ଜଙ୍ଗଲର କେଉଁ ଦୂର ଇଲାକାରୁ ଭାସି ଆସେ ଏକ ଚିହ୍ନା ଚିହ୍ନା ଡାକ । ଅତୀତର ଅନ୍ଧାର ହଟେଇ ସେ ଡାକ ଓହ୍ଲେଇ ଆସେ ତା' ନିଜ ଭିତରକୁ । ସେ ଆନମନା ହୁଏ ।



Digitized by srujanika@gmail.com



ନୂଆ ଜୀବନସହ ସାଲିସ୍



Digitized by srujanika@gmail.com

ଗୋଟାଏ ତୀବ୍ର କୋହ ଲହରେଇ ଲହରେଇ ତା' ଛାତି ଥରେଇ ବାହାରି ଆସେ ପଦାକୁ । ପୁରୁଣା କାଳର ଜଙ୍ଗଲୀ ଗଧିଆପରି ରାହା ଲମ୍ବେଇ ସେ ଦୁଃଖର ଗୀତ ଗାଏ । ଉଇଁଥିବା ଜହ୍ନ ଆଡ଼କୁ ମୁହଁଟେକି ସେ ଯେଉଁ ସ୍ୱର ଛୁଟାଏ, ତାହା ଅତି ତୀବ୍ର, ସ୍ପଷ୍ଟ ଅଥଚ କରୁଣ ଲାଗେ ।

ସେଇ ସ୍ୱର ଲହରରେ ସେ ଭାସିଯାଏ ତା'ର ଆଦିମ ଅତୀତକୁ । ଲାଗେ, ଏ ସ୍ୱର ଯେମିତି ତା'ର ଅତି ଆପଣାର, ଅତି ପରିଚିତ ।

ଦଳର ଆଗୁଆ କୁକୁର ଭାବରେ ସ୍ପିଜ୍ ଥିଲା ଖୁବ୍ ଅହଙ୍କାରୀ । କାହା ପ୍ରତି ତା'ର ଟିକିଏ ବି ଆଦର ନ ଥିଲା । ତେଣୁ ବକ୍ ତାକୁ ମୋଟେ ଭଲ ପାଏନା । ଦିନକୁଦିନ ସେମାନଙ୍କ ଭିତରେ ଶତ୍ରୁତାଭାବ ବଢୁଥାଏ ସିନା କମୁ ନ ଥାଏ ଟିକେ ।

ବକ୍ ଜାଣିଥିଲା, ସ୍ପିଜ୍ ସହିତ କେବେ ଦିନେ ତା'ର ଏକ ମରଣାନ୍ତକ ବଳ କଷାକଷି ହବ । ହେଲେ ଜାଣିଶୁଣି ସେ ନିଜଆଡୁ ଏଡ଼େଇ ଯାଉଥିଲା ସେଭଳି ପରିସ୍ଥିତିକୁ । କାରଣ ଏବେ ବି ତା'କୁ ଏ ଗାଡ଼ିଟଣା ଜୀବନ ଆରେଇ ନ ଥାଏ ପୂରାପୂରି । ସେ ଭାବେ ଆହୁରି ଅନେକ କିଛି ଶିଖିବାକୁ ଅଛି ତା'ର ।

ଠିକଣା ବେଳକୁ ଅପେକ୍ଷା କରିଥାଏ ବକ୍ ।

ଏଣେ କିନ୍ତୁ ସ୍ପିଜ୍ ଭାବୁଥାଏ ବକ୍‌ଟା ଡରକୁଳାଟା । ସେଇଥିପାଇଁ ତା' ସହିତ ଲଢ଼େଇ କରୁ ନାହିଁ । ଆଡ଼ଛାଡ଼ ହେଉ ରହୁଛି ତା'କୁ ଦେଖିଲେ । ସ୍ପିଜ୍, ବକ୍ ଆଗରେ ସବୁବେଳେ ଛାତି ଫୁଲେଇ ବୁଲେ । ଲାଞ୍ଜକୁ ଟେକି ନଡ଼ ନଡ଼ କରେ । ବକ୍ ସିନା ଦେଖିବାକୁ ଏତେ ବଡ଼ ବୋଲି ତାକୁ ଅନ୍ୟମାନେ ବଳୁଆ ଭାବୁଚନ୍ତି, ହେଲେ ପ୍ରକୃତରେ ସେଇଟା ପାରୁଡ଼ାଟେ । ସ୍ପିଜ୍ ମନେମନେ ହସେ ଏ କଥା ଭାବି ।

ସେଇଥିପାଇଁ 'ବାର୍ଜ' ହ୍ରଦ କୂଳରେ ବକ୍ ଆଉ ସ୍ପିଜ୍ ଭିତରେ ଶେଷକୁ ଯେଉଁ ଲଢ଼େଇ ହେଲା ସେଇଟା ଆରମ୍ଭ କରିଥିଲା ସ୍ପିଜ୍ । କାରଣ ବକ୍‌ର ନମ୍ରଭାବ ତାକୁ ଆହୁରି ସାହସୀ କରି ଦେଇଥିଲା ।

ପେରଲଟ୍ ଏଇ ସମୟରେ ନିଜର ସ୍ଲେଜ ଯାତ୍ରା ବନ୍ଦ ରଖିଥିଲେ । ସେମାନେ ସମସ୍ତେ ଅଟକି ରହିଥିଲେ ଗୋଟେ ଜାଗାରେ କ୍ୟାମ୍ପ ପକେଇ । କେତେଦିନ ହେବ ବରଫ ଝଡ଼ ଲାଗିରହିଥିଲା ତୁହାକୁତୁହା । ଛାତିଥରା କୋହଲା ପବନ ଗଳିଯାଉଥାଏ ଦେହରେ । ସତେ ଯେମିତି ଚକ୍ ଚକ୍ ମୁନିଆ ଧାର ଛୁରୀ । ଦିନକର କଥା । ସେଦିନ



Digitized by srujanika@gmail.com

ଉଷୁମ ଖୋଳି ଖୋଳି ବକ୍ ଯାଇ ଗୋଟେ ବଡ଼ ପଥର ତଳେ ବରଫ ଖୋଳି ଶୋଇଯାଇଥିଲା । ତା'ର ଇଚ୍ଛା ହଉ ନ ଥିଲା ମୋଟେ ସେ ଜାଗାରୁ ବାହାରିବାକୁ । କିନ୍ତୁ କ'ଣ କରାଯିବ । ପେଟର ଭୋକ ତ ପୁଣି ମାରିବାକୁ ପଡ଼ିବ ।

ତେଣୁ ଖାଇବା ବେଳ ହେଲାରୁ ଫ୍ରାଙ୍କୋସ୍ ଯେତେବେଳେ ସବୁ କୁକୁରଙ୍କୁ ଡାକ ଛାଡ଼ିଲେ, ବକ୍ ବି ଉଷୁମ ଛାଡ଼ି ଆସିବାକୁ ବାଧ୍ୟ ହେଲା । ଆସି ତରବର ହେଇ ଗିଳି ପକେଇଲା ନିଜ ଭାଗତକ । ତା'ପରେ ସେ ଫେରିଗଲା ନିଜ ତିଆରି ବସା ପାଖକୁ ।

ହେଲେ ଏ କ'ଣ ? ଆଉ ଗୋଟେ କିଏ ମାଡ଼ି ବସିଚି ତା' ବସା । ଆରେ ଇଏ ତ ସ୍ପିଜ୍ ! ବକ୍‌ର ମୁଣ୍ଡକୁ ପିତ୍ତ ଚଢ଼ିଗଲା ସ୍ପିଜ୍‌କୁ ଦେଖି । ନା, ଆଉ ନୁହେଁ । କ'ଣ ଭାବିଚି କି ସେ ନିଜକୁ ? ଆଜି ପାନେ ଚଖେଇବାକୁ ପଡ଼ିବ ତାକୁ । ହଠାତ୍ ଗୋଟାଏ ଗର୍ଜନ ଛାଡ଼ି ସେ ସ୍ପିଜ୍ ଉପରକୁ କୁଦା ମାରିଲା । ବକ୍ ଏମିତି ଆକ୍ରମଣ କରିବ ବୋଲି ସ୍ପିଜ୍ ଆଶା କରି ନ ଥିଲା ମୋଟେ । ତା'କୁ ଆଶ୍ଚର୍ଯ୍ୟ ଲାଗିଲା ବକ୍‌ର ସାହସ ଦେଖି । ମାତ୍ର ଯା ବୋଲି ହଟିଗଲାନି ସେ ପଛକୁ । ମୁହାଁମୁହିଁ ସାମ୍ନା କଲା । ଏମିତି ଛକାଛକି ଭିତରେ ସେ ଦୁହେଁ ପଥରତଳୁ ଠେଲାଠେଲି ହେଇ ପଦାକୁ ବାହାରି ଆସିଲେ । ତା'ପରେ ଓର ଖୋଜି ଝାମ୍ପ ମାରିବାପାଇଁ ପରସ୍ପରକୁ ସାମ୍ନା କରି ଚକ୍କର କାଟିଲେ ସେଠି ।

ପେରଲଟ୍ ଏବଂ ଫ୍ରାଙ୍କୋସ୍ ଉଭୟେ କୁକୁରମାନଙ୍କ ସମ୍ପର୍କରେ ବେଶ୍ ଅଭିଜ୍ଞ । ସେମାନେ ଠିକ ଲକ୍ଷ୍ୟ କରିଥିଲେ ଯେ ଦିନେ ନା ଦିନେ ବକ୍ ଆଉ ସ୍ପିଜ୍ ଭିତରେ ନିଶ୍ଚୟ ଗୋଟେ ଘମାଘୋଟ ଲଢ଼େଇ ହବ । ଦି ଜଣଙ୍କର ହାବଭାବରୁ ସେଇଭଳି ଏକ ସୂଚନା ପାଇଥିଲେ ସେମାନେ ।

ତେଣୁ ମାଡ଼ଗୋଳପାଇଁ ଛକାଛକି ଦେଖି, ପେରଲଟ୍ ପାଟିକରି କହିଲେ ''ଦେ ବକ୍ ସେ ହାରାମଜାଦା ସ୍ପିଜ୍‌କୁ ପାନେ । ବଦ୍‌ମାସ ସବୁବେଳେ ଅନ୍ୟମାନଙ୍କୁ କାମୁଡ଼ି ଗୋଡ଼ଉଚି ।''

ମାତ୍ର ସେଦିନ ଲଢ଼େଇଟା ଆରମ୍ଭ ହେଇ ବି ହେଇପାରିଲାନି ।

ହଠାତ୍ କୁଆଡୁ ଗୋଟେ ହାଡୁଆ ଜଙ୍ଗଲୀ କୁକୁର ଆସି ପେରଲଟ୍‌ଙ୍କ ପାଖରୁ ଅଳ୍ପଦୂରରେ ଥିବା ଖାଦ୍ୟ ଢାବଲରେ ମୁହଁ ଗଳଉଥିଲା । ପେରଲଟ୍ ଯେମିତି ଏ କଥା ଦେଖିଛନ୍ତି, ଠେଙ୍ଗୁଣି ବାହାର କରି ତା' ମୁଣ୍ଡକୁ ଦେଲେ ଗୋଟେ ଶକ୍ତ ପାହାର ।



Digitized by srujanika@gmail.com

ପରେ ପରେ ସେଠିକୁ ମାଡ଼ି ଆସିଲେ ପଲେ ବଣୁଆ କୁକୁର । ଚାଳିଶ କି ପଚାଶ ଖଣ୍ଡେ ହେବେ । ଅନ୍ୟ ଖାଦ୍ୟ ଢାବଲ ସବୁ ଜଗିବାପାଇଁ ଫ୍ରାଙ୍କୋସ୍ ଦଉଡ଼ି ଆସିଲେ ସେ ଜାଗାକୁ । ମାତ୍ର କୁକୁରଗୁଡ଼ାକ ଖାଦ୍ୟର ବାସ୍ନା ପାଇ ପାଗଳ ଭଳିଆ ହାଉଁ ହାଉଁ ହଉଥାଆନ୍ତି । ଏତେ କୁକୁରଙ୍କୁ, ସେ ଜଣେ ଲୋକ ଜଗିବେ ବା କେମିତି ? ଖାଲି ବାଡ଼ି ବୁଲୋଉଥାଆନ୍ତି ହୁସ୍‌ହୁସ୍ କରି । ଏମିତି ହାଉ ହାଉ କାଉ କାଉ ଭିତରେ ଢାବଲଯାକ ତଳେ ପଡ଼ି ଫିଟିଗଲା । ଖାଦ୍ୟ ସବୁ ବାହାରି ବିଛାଡ଼ି ପଡ଼ିଲା ତଳେ । ଭୋକିଲା କୁକୁରଯାକ ପାଉଁରୁଟି, ମାଂସ, ମାଛ, ଯାହା ପାଇଲେ ସବୁ ଚାଟିଚୁଟି ଖାଇଗଲେ । ଏତେ ଟିକେ ବି ଛାଡ଼ିଲେନି କୋଉଠି ।

ପେରଲଟ୍ ଏବଂ ଫ୍ରାଙ୍କୋସ୍ ପ୍ରାଣପଣେ ଚେଷ୍ଟା କରି ଠେଙ୍ଗୁଣିରେ ପିଟୁଥାନ୍ତି ସେମାନଙ୍କୁ । ହେଲେ ବଣୁଆ କୁକୁରଗୁଡାକ ଏତେ ଭୟଙ୍କର ଏବଂ ସେମାନଙ୍କର ସଂଖ୍ୟା ଏତେ ଅଧିକ ଯେ ତାଙ୍କୁ ଜବତ କରି ରଖିବା ଦୁଇଜଣଙ୍କ ପକ୍ଷେ ଏକାବେଳକେ ଅସମ୍ଭବ ଥିଲା ।

ସେ ସମୟରେ ନିଜ ଦଳର କୁକୁରତକ ଘେରି ଥିଲେ ସ୍ପିଜ୍ ଆଉ ବକ୍ ଚାରିପଟେ । ହଠାତ୍ ଏତେ ସଂଖ୍ୟାରେ ବଣୁଆ କୁକୁର ଦେଖି ସେମାନେ ସମସ୍ତେ ହଡ଼ବଡ଼େଇ ଗଲେ । ତେଣିକି ଦୁଇ ଦଳ ଭିତରେ ଆରମ୍ଭ ହେଇଗଲା ଘମାଘୋଟ ଲଢ଼େଇ । ପହିଲେ ପହିଲେ ଜଣା ପଡୁ ନ ଥିଲା କିଏ କାହାକୁ କାମୁଡୁଚି । ଏକ ପ୍ରକାର ହଇଚଇ ସୃଷ୍ଟି ହେଇଗଲା ସେ ଅଞ୍ଚଳରେ ।

ବକ୍ ଆଉ ତା'ର ସଙ୍ଗୀମାନେ ଖାଇପିଇ ବେଶ୍ ସୁସ୍ଥ ସବଳ ଥାଆନ୍ତି । ବଣୁଆ କୁକୁରଯାକ ଭୋକା ଆଉ ଦୁର୍ବଳିଆ । ତେଣୁ ବକ୍‌ଦଳର କୁକୁରମାନେ ଜଣକା ଦୁଇ ତିନିଟା କୁକୁରଙ୍କୁ କବଳିତ କରି ପକେଇଲେ । ହେଲେ କ'ଣ ହବ, ବଣୁଆ କୁକୁରମାନଙ୍କ ସଂଖ୍ୟା ଥିଲା ଢେର ଅଧିକ !

ଏକାବେଳକେ ତିନି ତିନିଟା କୁକୁରଙ୍କ ସାଙ୍ଗରେ ଲଢୁଥିଲାବେଳେ, ବକ୍‌ର ମନେ ହେଲା ଆଉ ଗୋଟେ କୁକୁର କୁଆଡୁ ସୁଯୋଗ ଦେଖି ତା'ଉପରକୁ ଝାମ୍ପି ପଡୁଚି । ସେଇ ଝାମ୍ପି ପଡ଼ିବା ଭିତରେ କାମୁଡ଼ି ଧରୁଚି ତା'ର ବେକ ମୂଳକୁ । ଟିକିଏ ନିରେଖି ବକ୍ ଦେଖିଲା, ସେ ହଉଚି ସ୍ପିଜ୍ । ବିଶ୍ୱାସଘାତକ ସ୍ପିଜ୍ ବଣୁଆ କୁକୁରଙ୍କ ଆଢୁଆଳରେ ରହି ଏମିତି କରିବାଟା ବକ୍‌କୁ ବଡ଼ ଅସହ୍ୟ ମନେ ହେଲା । ପ୍ରଚଣ୍ଡ ରାଗରେ ଦପ୍ ଦପ୍ କରି ଜଳି ଉଠିଲା ତା'ର ଆଖି ଦୁଇଟା ।



Digitized by srujanika@gmail.com

ଏକା ଝାଙ୍କରେ ରଡ଼ିଟାଏ କରି ସେ ଫୋପାଡ଼ି ଦେଲା ଚାରିଟାଯାକ କୁକୁରଙ୍କୁ ନିଜ ଉପରୁ । ଦେହର ଲୋମ ଠିଆ ଠିଆ ହୋଇ ଯାଇଥାଏ ତା'ର ।

ଏତିକିବେଳେ ସେ ଦେଖିଲା ନିଜ ଦଳର କୁକୁରଯାକ ପଛେଇ ପଛେଇ ଗଛ ପତ୍ର ଗହଳକୁ ପଳେଇ ଯାଉଛନ୍ତି । ବକ୍ ଦଉଡ଼ି ଦଉଡ଼ି ସେମାନଙ୍କ ସାଙ୍ଗରେ ସାମିଲ୍ ହେଇଗଲା । ବଣୁଆ କୁକୁରମାନେ ଆଉ ସେମାନଙ୍କର ପିଛା ନ କରି ଲାଗିଗଲେ କ୍ୟାମ୍ପ୍ ସାରା ଖାଦ୍ୟ ଦରାଣ୍ଡିବାରେ ।

ବକ୍‌ଦଳର କୁକୁରମାନେ ସମସ୍ତେ ପ୍ରାୟ ଖଣ୍ଡିଆ ଖାବରା ହୋଇ ଯାଇଥାଆନ୍ତି । ଅଳ୍ପଦିନ ହେବ ଆସିଥିବା କୁକୁର 'ଡଲି' ସବୁଠୁ ବେଶି ଆଘାତ ପାଇଥିଲା । ତା'ର ତଣ୍ଟି କଣା ହେଇ ଯାଇଥାଏ । ରାତିସାରା ସଭିଏଁ ଆପଣା ଆପଣା ଘା'କୁ ଚାଟି ଶୁଖେଇବାରେ ଲାଗିଥାଆନ୍ତି । ସକାଳ ପାହିଲାରୁ ଯାଇ କ୍ୟାମ୍ପକୁ ଫେରିଲେ ସେମାନେ ।

ବଣୁଆ କୁକୁରଯାକ ପଳେଇ ଯାଇଥିଲେ ସେଠୁ । ପେରଲଟ୍ ଓ ଫ୍ରାଙ୍କୋସ୍ ଭୀଷଣ ବ୍ୟସ୍ତ ଏବଂ ଚିଡ଼ିଚିଡ଼ା ଜଣା ପଡୁଥାଆନ୍ତି । ଖାଦ୍ୟ ଢାବଲମାନ କଣାକରି ଭୋକିଲା କୁକୁରଗୁଡ଼ାକ ଅଧାରୁ ଅଧିକ ଜିନିଷ ଖାଇ ଦେଇଥିଲେ କ୍ୟାମ୍ପରେ ପଶି । ଏପରିକି ତାଙ୍କ ମୁହଁରୁ ଚମଡ଼ା ଦଉଡ଼ି, ଦସ୍ତାନା ଆଦି ବାଦ୍ ଯାଇ ନ ଥିଲା । କୁକୁର ନୁହଁ ତ ସର୍ବଗିଳା ଅସୁରଗୁଡ଼ାଏ ।

କୁକୁରମାନଙ୍କ ଘା'ସବୁ ପରୀକ୍ଷା କରି କ'ଣ ସବୁ ମନକୁ ମନ କହୁ ଥାଆନ୍ତି ପେରଲଟ୍ ।

ଫ୍ରାଙ୍କୋସ୍ ପାଖକୁ ଆସି ପଚାରିଲେ "କ'ଣ ଦେଖୁଚ ? ଏ ସବୁ ପାଗଳା କୁକୁରଙ୍କ କାମୁଡ଼ା । ଆମ କୁକୁରମାନେ ଯଦି ପାଗଳା ହେଲେ, ତେବେ ? କି ଦୁର୍ଭାଗ୍ୟ ଜୁଟିଲା ଆସି । ଏତେ ହିନସ୍ତା ହବା ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।"

ପେରଲଟ୍ କେବଳ ମୁଣ୍ଡ ହଲେଇଲେ ଦୂର ଦିଗ୍‌ବଳୟଆଡ଼େ ଚାହିଁ । କିଛି ସମୟ ପରେ କହିଲେ "ଆଗକୁ ମାଡ଼ି ଚାଲିବା ଛଡ଼ା ଆମର ଆଉ କିଛି ଉପାୟ ନାହିଁ । ସେସବୁ କଥା ଏଇଲେ ଭାବି ଲାଭ କ'ଣ ? ଏଠୁ "ଡ଼ସନ୍" ରହିଲାଣି ଚାରି ଶହ ମାଇଲ୍ ଦୂରରେ । ଯାହା ଘଟିବ ଘଟୁ ପଛେ, ଆମକୁ ଯାତ୍ରା ଜାରି ରଖିବାକୁ ପଡ଼ିବ ।"

ଆଗକୁ ଯିବା ବୋଲି କହି ଦବାଟା ସହଜ କିନ୍ତୁ କାର୍ଯ୍ୟରେ ପରିଣତ କରିବା ଥିଲା ବଡ଼ କଠିନ । ବଣୁଆ କୁକୁରଙ୍କ ଆକ୍ରମଣଯୋଗୁଁ ଛିଣ୍ଡିଛାଣ୍ଡି ଯାଇଥିବା ଚମଡ଼ା



Digitized by srujanika@gmail.com

ଦଉଡ଼ି ଓ ଲଗାମ ଆଦି ମରାମତି କରୁ କରୁ କେବଳ ସେଇଠି ତିନି ଚାରି ଘଣ୍ଟା ବିତିଗଲା । ସବୁ ସଜାଡ଼ି, କୁକୁରମାନଙ୍କୁ ଯୋଚି, ଫ୍ରାଙ୍କୋସ୍ 'ମସ୍' ବୋଲି ଡାକ ଦେଲା ବେଳକୁ ଦିନରୁ ଅଧା ଗଡ଼ି ଗଲାଣି ।

ଦଳକଯାକ କୁକୁର ଖଣ୍ଡିଆ ଖାବରାଯୋଗୁଁ କ୍ଲାନ୍ତ । ତଥାପି ସେମାନେ ଆପ୍ରାଣ ଚେଷ୍ଟା କରି ମାଡ଼ି ଚାଲିଲେ ଆଗକୁ । ପଛକଥା ଭାବିବାକୁ ଆଉ ବେଳ ନାହିଁ । ଏପରିକି କର୍ତ୍ତବ୍ୟର ଆହ୍ୱାନରେ ବକ୍ ଓ ସ୍ପିଜ୍ ଭୁଲି ଗଲେ କିଛି ସମୟପାଇଁ ସେମାନଙ୍କ ଭିତରେ ଥିବା ପୁରୁଣା ଶତ୍ରୁତାକୁ ।

ତିରିଶ ମାଇଲ ବ୍ୟାପି ଲମ୍ବିଥିବା ନଦୀଟା, ବିସ୍ତାରି ରହିଥାଏ ବରଫ ଉପରେ । କୁଳୁକୁଳୁ ନାଦ କରି ଧାଉଁଥିବା ତା'ର ପାଣି ତଥାପି ବରଫ ପାଲଟି ନ ଥାଏ ପୂରାପୂରି । କୋଉଠି ଭଉଁରି କିମ୍ବା ଗଭୀର ଜାଗାମାନଙ୍କରେ ଯାହା ବରଫର ଭେଳାମାନ ଭାସୁଥାଏ ରହି ରହି । ନଦୀ ଦାଢ଼ର ପତଳା ବରଫ ଆସ୍ତରଣ ଉପରେ ଛଅ ଦିନ କାଳ ଧାଇଁଲେ ଯାଇ ତାକୁ ଅତିକ୍ରମ କରି ହବ । ଏଥିପାଇଁ ସାହସ ଓ ସାବଧାନତା ଉଭୟ ସମାନ ପରିମାଣରେ ଲୋଡ଼ା ।

ପେରଲଟ୍ ଯେତେ ଅଭିଜ୍ଞ ହେଲେ ବି, ଆଗେ ଆଗେ ଦଉଡ଼ି ଯାଉ ଯାଉ ବାରମ୍ବାର ଗଳି ପଡୁଥିଆନ୍ତି ବରଫ ଗାଡ଼ ଭିତରେ । ପ୍ରତି ଥର ଫ୍ରାଙ୍କୋସ୍ ଝପଟିଆସି ହାତ ବଢ଼ାଇ ତାଙ୍କୁ ବାହାରକୁ ଭିଡ଼ି ଆଣନ୍ତି । କାଳେ ପୂରା ଭିତରକୁ ଗଳି ପଡ଼ିବେ ବୋଲି ଖଣ୍ଡେ ମୋଟା ଠେଙ୍ଗା ସେ ଭୂଇଁ ସହ ସମାନ୍ତରାଳ କରି ଧରିଥା'ନ୍ତି ହାତରେ । ସେଠି ପାଣି ଶୂନ୍ ତାପମାତ୍ରା ଠାରୁ ପଚାଶ ଡିଗ୍ରୀ ତଳେ ଥାଏ । ଏତେ ଥଣ୍ଡା ଯେ ଦେହ ପକ୍ଷାଘାତ ହୋଇଯିବ ।

ତେଣୁ ପ୍ରତି ଥର ଏଇମିତି ବରଫ ଗାଡ଼ ଭିତରକୁ ଗଳି ପଡ଼ିଲେ, ପେରଲଟ୍ଙ୍କ ପୋଷାକପତ୍ର ନିଆଁଜାଳି ଶୁଖେଇବାକୁ ପଡ଼େ ନଚେତ୍ ତାଙ୍କୁ ପିଛି ଆଉ ଆଗକୁ ଯାଇ ହୁଅନ୍ତାନି । ଏଇ ନିଆଁ ଲଗେଇ ପୋଷାକ ଶୁଖେଇବାରେ କିନ୍ତୁ ବହୁ ସମୟ ନଷ୍ଟ ହୁଏ ।

ଥରେ ସ୍ଲେଜ୍‌ଗାଡ଼ିଟା ଆଗକୁ ଯାଉ ଯାଉ ଗଳି ପଡ଼ିଲା ଗୋଟେ ବଡ଼ ଖାତ ଭିତରକୁ । ତା' ସହ ପହିଲେ ଡାଭେ ଓ ପରେ ପରେ ବକ୍ ଟାଣି ହେଇଯାଇ ପାଣିରେ ପଡ଼ିଲେ । ପେରଲଟ୍ ଓ ଫ୍ରାଙ୍କୋସ୍ ଉଦ୍ଧାର କଲାବେଳକୁ ସେମାନେ ଅଧା କାଠ ପାଲଟି ଗଲେଣି ।

'ବକ୍' ଓ 'ଡାଭେ' ଉଭୟେ ଅଧାମରା ହୋଇଯାଇଥାଆନ୍ତି । ଲୁମମାନ ପାଣି ଲାଗି ବରଫ ପାଲଟି ଯାଇଥାଏ । ସାଙ୍ଗେ ସାଙ୍ଗେ କାଠ ଯୋଗାଡ଼ କରି ଫ୍ରାଙ୍କୋସ୍



Digitized by srujanika@gmail.com

ନିଆଁ ଜାଳି ବସିଲେ । ଦୁଇ ଜଣଙ୍କୁ ଧରି ରଖିଲେ ନିଆଁ ପାଖରେ । ବରଫ ତରଳି ଯିବାରୁ ସାଷ୍ଟମ କରିବାପାଇଁ ନିଆଁ ଚାରିପଟେ ଦଉଡ଼େଇଲେ ତାଙ୍କୁ ।

ଆଉ ଥରେ ସେମିତି ସ୍ପିଜ୍ ଗୋଡ଼ ଖସେଇ ଦେଇ ପଡ଼ିଗଲା ଗୋଟେ ଗାଡ଼ ଭିତରକୁ । ତା' ସହିତ ଧାଡ଼ି ହେଇ ଯୋଚା ହୋଇଥିବା ସବୁ କୁକୁର ଭିଡ଼ି ହେଇଗଲେ । ଉପରେ ଥିଲେ ବକ୍ ଆଉ ଡାଭେ । ସବୁଯାକ ମାଡ଼ ପଡ଼ିଲା ତାଙ୍କ ଉପରେ । ଆଣ୍ଠୁ ପକେଇ ହାମୁଡ଼େଇ ସେ ଦୁହେଁ ଭିଡ଼ି ଧରିଲେ ସମସ୍ତଙ୍କୁ ; ନ ହେଲେ ସ୍ଲେଜ୍‌ଗାଡ଼ି ସହ ସବୁ ଜିନିଷ ଓ କୁକୁର ପଡ଼ିଥାନ୍ତେ ଗାଡ଼ ଭିତର ପାଣିରେ । ପାଦତଳର ବରଫ ଧସି ହୋଇଯାଉଥାଏ । ସ୍ଲେଜ୍‌ଗାଡ଼ିଟାକୁ ହାମୁଡ଼ି ଧରିଥାନ୍ତି ଫ୍ରାଙ୍କୋସ୍ । ତିନିଜଣଯାକ ଏଇମିତି ପ୍ରାଣମୂର୍ଚ୍ଛା ଲାଗିଥିଲାବେଳେ ପେରଲଟ୍ ଜଣ ଜଣ କରି କୁକୁରଙ୍କୁ ଟେକି ଆଣିଲେ ଉପରକୁ । ତାଙ୍କ ଭିତରୁ ଅନେକେ ଅଧାପ୍ରାଣ ହେଇ ଯାଇଥିଲେ ବରଫ ପାଣିରେ ବୁଡ଼ିଯାଇ ।

ହେମାଳ ବରଫ ସାଙ୍ଗକୁ ବକ୍‌ର ଆଉ ଗୋଟିଏ ବି ଅସୁବିଧା ଥାଏ । ପୁରୁଷ ପରେ ପୁରୁଷ ତା'ରି ଶ୍ରେଣୀର କୁକୁରମାନେ ମଣିଷମାନଙ୍କ ସହିତ ରହି ସୁକୁମାରିଆ ହୋଇ ଯାଇଥିଲେ । ସହରରେ କୁକୁରଙ୍କର କ'ଣ ବା କଷ୍ଟ ? ଖାଉନ୍ଦ ଘରେ ବେଶ୍ ଆରାମରେ ରହି ରହି ଗୋଡ଼ ହାତ ସେମାନଙ୍କର କଅଁଳ ହେଇଯାଇଥାଏ । ହସ୍କି କୁକୁରମାନଙ୍କପରି ସେମାନେ ଏତେ ନିଦା ଆଉ ଟାଣୁଆ ହେଇ ପାରନ୍ତିନି । କଷ୍ଟ ବି ସହିପାରନ୍ତିନି ସେଇଥିପାଇଁ ।

ଅତଏବ ସେଦିନ ସ୍ଲେଜ୍ ଗାଡ଼ିର ଦଉଡ଼ ଯେତେବେଳେ ବନ୍ଦ ହେଲା ଏବଂ ରାତି ରହଣିପାଇଁ ତମ୍ବୁ ପଡ଼ିଲା, ବକ୍ ଗୋଟାଏ ମଲା କୁକୁର ପରି ପଡ଼ି ରହିଲା ସେଠି । ଭୋକରେ ପେଟ ଜଳୁଥାଏ ହାଉ ହାଉ ହୋଇ । ଖାଇବାପାଇଁ ଉଠି ତମ୍ବୁ ପାଖକୁ ଯିବାସକାଶେ ତା'ର ଗୋଡ଼ହାତ ଚଳୁ ନ ଥାଏ । କ'ଣ କରିବ ବିଚରା !

ଏ କଥା ଦେଖି ଫ୍ରାଙ୍କୋସ୍ ତା' ମୁହଁ ପାଖରେ ଆଣି ଖାଇବା ଜିନିଷ ଥୋଇଲେ । ତା' ଗୋଡ଼ଗୁଡ଼ାକୁ ଘଷି ଦେଲେ ଟିକେ ମଲମ ଦେଇ । ତା'ପରେ ଯାଇ ବକ୍‌କୁ ଭଲ ଲାଗିଲା ଟିକେ ।

ଏଣିକି ନିତି ରାତିରେ ବକ୍‌ର ଗୋଡ଼ ଘଷିବା ଦରକାର ପଡ଼ିଲା । ଅଧଘଣ୍ଟା ଖଣ୍ଡେ ଏମିତି ମାଲିସ୍ କରି ଦେଲା ପରେ ବକ୍ ଚେଙ୍ଗା ହେଇ ଠିଆ ହୁଏ ।

ଶେଷକୁ ପେରଲଟ୍ ଏ କଥାର ସମାଧାନ କରିଦେଲେ । ନିଜର ଗୋଟେ ଟୋପିରୁ ଖଣ୍ଡେ ଚିରି ସେ ବକ୍‌ର ଗୋଡ଼ପାଇଁ ମୋଜା ତିଆରି କରିଦେଲେ । ମୋଜା



Digitized by srujanika@gmail.com

ପିଛି ଦଉଡ଼ିଲାରୁ ଆଉ ବକ୍‌କୁ କଷ୍ଟ ଜଣାପଡ଼ିଲାନି । ନଖ ସନ୍ଧିରେ ବରଫ ପଶି ଆଉ ଖଣ୍ଡିଆ ହେଲାନି । ଧୀରେ ଧୀରେ ଗୋଡ଼ ତା'ର ପୂର୍ବଭଳି ଭଲ ହେଇଗଲା । ଯେତେ ଦଉଡ଼ଧାପଡ଼ କଲେ ବି ବାଧିଲାନି ତାକୁ ।

କେତେ ଦିନ ପରେ ବକ୍‌ର ଚମଡ଼ା ମୋଜା ଛିଣ୍ଡି ଯିବାରୁ ତାକୁ ଫୋପାଡ଼ି ଦିଆଗଲା ।

ସବୁ ଭିତରେ ସ୍ଲେଜ୍‌ଗାଡ଼ିର ଗତି ଅବ୍ୟାହତ ରହିଥାଏ । ଦିନ ଦିନ ଧରି କଠୋର ଜୀବନଯାତ୍ରା ସହିତ ସେମାନେ ମାଡ଼ି ଚାଲିଥାନ୍ତି ଆଗକୁ । ବକ୍ ମନରେ ଭାରି ଗର୍ବ । ନିଜର ଦଳକୁ ନେଇ ସେ ବଡ଼ ଗୌରବ ଅନୁଭବ କରେ । ଏଣିକି ଯେତେ କଷ୍ଟ କାମ ପଡ଼ିଲେ ବି ସେ ସବୁବେଳେ ଆଗକୁ ତିଆର ହେଇ ବାହାରେ । ଟାଣିବା, ଦଉଡ଼ିବା, ଅଜଣାବାଟକୁ ଭରସିବା, ସବୁ କାମରେ ଅନ୍ୟମାନଙ୍କୁ ଉତ୍ସାହ ଦବା ଓ ସ୍ଲେଜ୍‌ଗାଡ଼ି ସହ ଦିହ ଲଗେଇ କାମ କରିବାରେ ସେ ଆଗଭର ହେଇ ବାହାରୁଥିଲା; ଯେତେ କଷ୍ଟ ପଡୁ ପଛେ ।

ଏଭଳି ଅନୁଭବ କରିବାରେ ତା' ପାଇଁ ଆହୁରି କାରଣ ମଧ୍ୟ ଥିଲା । ଡାଭେ ସବୁବେଳେ ସ୍ଲେଜ୍ ପାଖକୁ ଲାଗିକରି ଥାଏ । ସେ ଥାନ ତା' ପାଇଁ ପୂରା ଫିଟ୍ । ସେଭଳି ଏକ ଦାୟିତ୍ୱପୂର୍ଣ୍ଣ ଜାଗା ପାଇଥିବାରୁ ଡାଭେ ଛାତି ଫୁଲାଇ ଚାଲେ । ସେ ମରିବ ପଛେ ସେ ଜାଗା ଅନ୍ୟ କାହାକୁ ଛାଡ଼ିବନି । ସ୍ପିଜ୍ 'ଆଗୁଆ କୁକୁର' ବା 'ନେତା କୁକୁର' ଭାବେ ସବୁବେଳେ ଥାଏ ଆଗରେ । ରାଜାର ସମ୍ମାନ ସେ ପାଏ । ତେଣୁ ଦଳ ଭିତରେ କେହି ଗଡ଼ବଡ଼ କଲେ ସ୍ପିଜ୍ ପାଟି ମେଲେଇ ଦଉଡ଼ି ଆସେ କାମୁଡ଼ିବାକୁ । ଦଳର ଦଳପତିଭାବେ ସେଇଟା ତା'ର ହକ୍ ।

ଧାଡ଼ିର ପଛରେ ଥାଇ ବକ୍ ସବୁ ଲକ୍ଷ୍ୟ କରେ । ସ୍ପିଜ୍‌ର ମୁରବିପଣିଆ ଦେଖି ତା' ମନରେ ଈର୍ଷ୍ୟା ହୁଏ । ସେ ଭାବେ ପ୍ରକୃତରେ ମୁଁ ଦଳପତି ହବାକୁ ଯୋଗ୍ୟ, ସ୍ପିଜ୍ ନୁହଁ । ମନ ଲଗାଇ ଖଟିଲେ ମୁଁ ନିଶ୍ଚେ ଦିନେ ସେ ସ୍ଥାନ ସ୍ପିଜ୍‌ଠାରୁ ଛଡ଼େଇ ନେବି । ମୁଁ ହେବି ଦଳର ନେତା । ସମସ୍ତଙ୍କ ଭିତରେ ରାଜା ହେବି ମୁଁ ।

ବକ୍ ଜାଣିସାରିଥାଏ ଯେ 'ସ୍ପିଜ୍'କୁ ଜୀବନରେ ମାରିଦେଲେ ଯାଇ ସେ ଦଳର ନେତା ହେଇପାରିବ । ନଚେତ୍ ଅନ୍ୟ କୌଣସି ବାଟରେ ତାକୁ ସେ ଆସନରୁ ହଟେଇବା ଆଉ ସମ୍ଭବ ନୁହେଁ । ତାହା ହିଁ ପଶୁଜଗତର ନିୟମ । ମାତ୍ର କେବେ ଓ କେମିତି ସେ ଚରମ ସୁଯୋଗ ହାସଲ ହେବ ସେଇ ଅପେକ୍ଷାରେ ସେ ଥାଏ ।



Digitized by srujanika@gmail.com

'ସ୍ପିଜ୍' ଥାଏ ଦଳର ନେତା । ତଥାପି ବକ୍‌କୁ ଦେଖିଲେ ତା'କୁ ଗୋଟାଏ କେମିତି କେମିତି ଲାଗେ । ମୋଟେ ସ୍ୱାଭାବିକ୍‌ ଲାଗେନା ବକ୍‌ର ଉପସ୍ଥିତି । ଅନ୍ୟ ସବୁ କୁକୁରଯାକ ଉତ୍ତର ଅଞ୍ଚଳର । କେବଳ ବକ୍‌କୁ ଛାଡ଼ି । ବକ୍ ଆସିଚି ଦକ୍ଷିଣରୁ । ବରଫ ଅଞ୍ଚଳରେ, ସ୍ଲେଜ୍‌ଗାଡ଼ି ଟାଣିବା କାମରେ ଦକ୍ଷିଣ ଅଞ୍ଚଳର ଗୋଟାଏ କୁକୁର ପାରି ଉଠିବା କଷ୍ଟକର । ମାତ୍ର ଆଶ୍ଚର୍ଯ୍ୟର କଥା, ବକ୍ ଦିନକୁ ଦିନ କାମଦାମରେ କେବଳ କୁଶଳତା ହାସଲ କରୁ ନ ଥାଏ, ଓଲଟି ବେଶ୍ ତାଗଡ଼ା ଦେଖାଯାଉଥାଏ ମଧ୍ୟ ।

'ସ୍ପିଜ୍' ଜାଣେ ଦକ୍ଷିଣରୁ ଯେତେ ଯିଏ କୁକୁର ଏ ବରଫ ଅଞ୍ଚଳକୁ ଆସନ୍ତି, କେହି ଠାକି ପାରନ୍ତିନି ବେଶି ଦିନ । ଅଳ୍ପକେତେଦିନରେ ସେମାନେ ରୋଗିଣା ହୋଇଯାଇ ଭୋକଉପାସରେ ମରିଯାଆନ୍ତି । ଏବେ 'ବକ୍' ଯେ କୌଣସି 'ହସ୍କି' କୁକୁରଠାରୁ ବି ଶକ୍ତିଶାଳୀ ହେଇଯାଇଥିଲା । ଶରୀର ଯେମିତି ବିଶାଳ, କଷ୍ଟ ସହିବା ଓ ହିଂସ୍ରତା ଦେଖେଇବା ଆଦି କୁକୁରସୁଲଭ ଗୁଣରେ ବି ସେ ବେଶ୍ ଦକ୍ଷତା ହାସଲ କରିସାରିଥିଲା । ଆଗର ସେ ଭଦ୍ର, ନିରୀହଭାବ ତା'ଠାରୁ କୁଆଡ଼େ ଅପସରି ଯାଇଥିଲା ।

ବକ୍‌ର ଏଭଳି ଉନ୍ନତି ହିଁ ବ୍ୟତିବ୍ୟସ୍ତ କରିପକାଉଥିଲା ସ୍ପିଜ୍‌କୁ ।

ଦିନେ ସକାଳୁ ଯାତ୍ରା ଆରମ୍ଭ କରିବାପାଇଁ ଫ୍ରାଙ୍କୋସ୍ ଗାଡ଼ି ସଜିଲ କରୁଚନ୍ତି, ଏତିକିବେଳେ ଅଳ୍ପ ଦୂରରୁ ଏକ ହୃଦୟବିଦାରକ କରୁଣ ସ୍ୱର ଆସି ପଡ଼ିଲା ତାଙ୍କ କାନରେ । ପ୍ରଳାପର ଯନ୍ତ୍ରଣାରେ ଛାତିଥରାଇ କୋଉଠୁ ଗୋଟିଏ କୁକୁର ଚିର୍‌ଚିରା ରଡ଼ି ଛାଡ଼ି ଖଣ୍ଡ ମଣ୍ଡଳ କମ୍ପେଇ ଦେଉଛି । କିଏସେ ଚିତ୍କାର କରୁଛି ଏମିତି ?ଏତ ଗୋଟିଏ ସଦ୍ୟ ପାଗଳ ରୋଗ ଧରିଥିବା କୁକୁରର କାନ୍ଦଣା ! କୋଉ କୁକୁରକୁ ପାଗଳ ରୋଗ ଧରିଲା ପୁଣି ? ଆତଙ୍କିତ ହୋଇପଡ଼ିଲେ ଫ୍ରାଙ୍କୋସ୍ । ଦଳର ଅନ୍ୟ କୁକୁରମାନେ ଭୟରେ ଜଡ଼ସଡ଼ ହୋଇ, କାନ ଠିଆ ଠିଆ କରି ଚାହିଁ ରହିଲେ ସେଇଆଡ଼କୁ ।

ଫ୍ରାଙ୍କୋସ୍ ଦେଖିଲେ ତାଙ୍କ ଦଳର କୁକୁର 'ଡଲି' ହିଁ ଏମିତି ଆର୍ତ୍ତ ଚିତ୍କାର କରୁଚି ।

ଏମିତି କିଛି ସମୟ କାନ୍ଦିବା ପରେ ହଠାତ୍ 'ଡଲି' ଧାଇଁଲା ଅନ୍ୟ କୁକୁରମାନଙ୍କୁ କାମୁଡ଼ିବାକୁ । ଏତିକିବେଳେ ତା'ର ନଜର ପଡ଼ିଲା ବକ୍ ଉପରେ । ମୁହଁ ମେଲେଇ, ପାଟିରୁ ଲାଳ ଗରଳ ବୁହାଇ ସେ ଧାଇଁଲା ତା' ପଛରେ । ବକ୍ ଏବେ କରେ କ'ଣ ? 'ଡଲି' ଆଖିରେ ପାଗଳାମୀର କଠୋରତା । 'ବକ୍' ସାମ୍ନାରେ 'ଡଲି' କିବା ଛାର ! ଗୋଟାଏ ଝାମ୍ପରେ ସେ ତା'କୁ ଶେଷ କରିଦିଅନ୍ତା । ମାତ୍ର



Digitized by srujanika@gmail.com

ଏଇଟା ଲଢ଼େଇର ସମୟ ନୁହେଁ । ଜୀବନ ବଞ୍ଚେଇ ତା'ହାବୁଡ଼ରୁ ଦୂରକୁ ପଳେଇଗଲେ ଯାଇ ରକ୍ଷା । ଡଲି ଏବେ ପାଗଳୀ । ସେ ଯାହାକୁ କାମୁଡ଼ିବ ତା'ର ବି ଡଲି ଅବସ୍ଥା ହବ । ସବୁ ବଳ ଖର୍ଚ୍ଚ କରି ବକ୍ ଧାଇଁଲା ତା'ହାବୁଡ଼ରୁ ।

ବକ୍ ଧାଇଁଥାଏ ପ୍ରାଣମୂର୍ଚ୍ଛା ହେଇ । ଡଲି ବି ଧାଇଁଥାଏ ସମାନ ତାଳ ଦେଇ । ଡଲି ଦେହରେ ପାଗଳାମୀ ସବାର ହେଇଚି । ପାଗଳ ହେଲେ କୁକୁରର ଦେହକୁ ଆହୁରି ବଳ ମାଡ଼ିଆସେ । ତେଣୁ ଅନ୍ୟଦିନ ଅପେକ୍ଷା ଆଜି ଡଲି ଧାଇଁଥାଏ ଆହୁରି ବେଗରେ । ଲାଞ୍ଜ ନଡ଼ବଡ଼ । ପାଟିରୁ ଅହରହ ଲାଳ ବୋହୁଚି । ଆଉ ଟିକିଏ ହେଇଥିଲେ ସେ କାମୁଡ଼ି ଦେଇଥାନ୍ତା ବକ୍‌କୁ । ବକ୍ ଆଉ ମାତ୍ର ଗୋଟିଏ ଡିଆଁ ଦୂରରେ ଥିଲା ତା'ପାଖରୁ । ଏତିକିବେଳେ ଫ୍ରାଙ୍କୋସ୍ ଦଉଡ଼ି ଆସି ଫୋପାଡ଼ିଲେ ତାଙ୍କ ଧାରୁଆ କୁରାଢ଼ି । କୁରାଢ଼ିଟା ଝପ୍‌କିନା ବସିଗଲା 'ଡଲି'ର ବେକ ଉପରେ । ବିଚାରୀ ପାଗଳୀ ଡଲି, ମରିପଡ଼ିଲା ସେଇଠି ।

'ବକ୍' ଧଇଁ ସଇଁ ହେଇ ବସି ପଡ଼ିଲା ଖଣ୍ଡେ ଦୂରରେ । ଛାତି ତା'ର ପଡୁଥାଏ ଉଠୁଥାଏ । ରକ୍ତ ଜୁଡୁବୁଡୁ 'ଡଲି'ର ମଲା ଦେହଟା ବରଫ ଉପରେ ପଡ଼ିରହିଥାଏ ସେଇଭଳି । ବଣୁଆ ପାଗଳା କୁକୁର କାମୁଡ଼ାରେ ଅଳ୍ପ ଦିନତଳେ ଲହୁଲୁହାଣ ହେଇଥିବା ଅଭାଗିନୀ 'ଡଲି' ଶେଷରେ ପାଗଳାମୀର ଶିକାର ହେଇ କୁରାଢ଼ି ଧାରରେ ମଲା । 'ବକ୍' ଟିକେ ଭାବପ୍ରବଣ ହେଇ ଶେଷଥରପାଇଁ ଚାହିଁଲା ଡଲିର ମଲାଦେହକୁ ।

ତା'ପରେ ସେ ଧୀରେ ଧୀରେ ଫେରି ଆସିଲା ସ୍ଲେଜ୍ ପାଖକୁ । ବେଶ୍ ଦଉଡ଼ିବାକୁ ପଡ଼ିଲା ତା'କୁ ଆତ୍ମରକ୍ଷାପାଇଁ । ଗୋଡ଼ହାତ ଅବଶ ଲାଗୁଥାଏ । ସ୍ଲେଜ୍ ଟାଣିବାକୁ ମୋଟେ ମନ ତାକୁ ନ ଥାଏ । ତଥାପି ସେ ଦଳର ନିୟମମାନି ଠିଆ ହେଲା ସ୍ଲେଜ୍‌ରେ ଯୋଚାହେବାପାଇଁ ।

ଏତିକିବେଳେ ତାକୁ ଦୁର୍ବଳ ଓ ଅସହାୟ ଦେଖି, ସ୍ପିଜ୍ ମାଡ଼ି ଆସିଲା ତା' ଉପରକୁ । ମାଡ଼ି ଆସି କାମୁଡ଼ି ଧରିଲା ତା'ର ପିଠିକୁ । ସ୍ପିଜ୍‌ର ଦାନ୍ତ ଗଳିଯାଇ ବକ୍ ହାଡ଼ରେ ବାଜିଲା ଭଳି ସେ ଅନୁଭବ କଲା । ପ୍ରତିଆକ୍ରମଣ କରିବାପାଇଁ ବେଳ ପାଇଲାନି ସେ । ଫ୍ରାଙ୍କୋସ୍ ଦେଖୁଥିଲେ ଏସବୁ । ରାଗ ଜରଜର ହେଇ ଚାବୁକରେ ସେ ପିଟି ଦେଇଗଲେ 'ସ୍ପିଜ୍'କୁ । 'ସ୍ପିଜ୍' କ୍ୟାଉଁ କ୍ୟାଉଁ ହେଇ ଗଡ଼ିଗଲା ସେଠି ।

'ବକ୍' ଭାବିଲା ଠିକ୍ ଶାସ୍ତି ମିଳିଚି ହାରାମୀ 'ସ୍ପିଜ୍'କୁ । ହେଲେ ଆଉ ନୁହେଁ । ଏଣିକି ସେ 'ସ୍ପିଜ୍'କୁ ଠିକଣା ଜବାବ ଦବ । ସହିବାର ତ ପୁଣି ଗୋଟେ ସୀମା ଅଛି !!



Digitized by srujanika@gmail.com

ବକ୍‌ର ଚେଷ୍ଟା ଫଳରେ ତା ଆଡ଼କୁ ବେଶ୍ କେତେଜଣ ଢଳି ସାରିଥିଲେ । ଏଣିକି ସେମାନଙ୍କ ହେପାଜତ କରିବାଟା ନିଜର ଦାୟିତ୍ୱ ବୋଲି ମନେକଲା ସେ ।

ଦିନେ ସକାଳୁ ଖୁବ୍ ବରଫ ପଡ଼ିଥାଏ । କୁକୁରଯାକ ଆସି ଠିଆ ହେଲେ ସ୍ଲେଜ୍‌ଗାଡ଼ି ପାଖରେ । ଲଗାମ୍ ଭିଡ଼ାହେଲାପରେ ଗାଡ଼ି ଚାଲିବ । ହେଲେ 'ପାଇକ୍'ର ଦେଖା ନାହିଁ । ଥଣ୍ଡାକୁ ଡରି ସେ ଛପିଯାଇଚି କୋଉଠି । ଏମିତିରେ 'ପାଇକ୍'ଟା ନିର୍ଘାତ ଅଳସୁଆ । ତେଣୁ ବରଫଗାଡ଼ କରି ସେ ନିଶ୍ଚିନ୍ତରେ ଶୋଇଯାଇଥିଲା କୋଉ ଜାଗାରେ ।

ଫ୍ରାଙ୍କୋସ୍ ବଡ଼ ପାଟିକରି ତାକୁ ଡାକ ଛାଡ଼ିଲେ । 'ସ୍ପିଜ୍' ଦଳର ନେତା । 'ପାଇକ୍' ନ ଥିବାଯୋଗୁଁ ସେ ତାକୁ ଇଆଡ଼େ ସିଆଡ଼େ ଖୋଜିଲା । ନିଜର ମୁରବି ପଣିଆ ଜାହିର କରି ରଡ଼ିଛାଡି ଭୁକିଲା । ଖୋଜିବାପାଇଁ ଏଠି ସେଠି ବରଫ ଶୁଙ୍ଘି ଖୋଳି ପକଉଥିଲା ଦୁଇ ଚାରି ଜାଗା ।

ହେଲେ ଦଗାଦିଆ 'ପାଇକ୍' ମିଳୁଚି କୋଉଠୁ ?

ଢେର୍‌ବେଳ ବାଦ୍ 'ପାଇକ୍' ଗୋଟେ ଗାଡ଼ ଭିତରୁ ମୁଣ୍ଡଟେକି ଉଠିଲା । ସେତେବେଳକୁ ଅନେକ ଡେରି ହୋଇଗଲାଣି । ତାକୁ ଦେଖୁ ଦେଖୁ ସ୍ପିଜ୍ ଦଉଡ଼ିଗଲା ପାଟି ମେଲାଇ । ଉଦ୍ଦେଶ୍ୟ ହେଲା ତାକୁ ଆଚ୍ଛାକରି ପାନେ ଦବ । ଏତିକିବେଳେ 'ବକ୍' ଛାତି ଫୁଲେଇ ଠିଆ ହୋଇଗଲା ଆସି ଦୁଇ ଜଣଙ୍କ ମଝିରେ । ଆଶ୍ଚର୍ଯ୍ୟ ହୋଇ ଧଡ଼୍‌କିନା ଠିଆ ହୋଇଗଲା ସ୍ପିଜ୍ । ରାଗରେ 'ବକ୍'ର ବେକମୂଳ ଲୋମମାନ ଠିଆ ଠିଆ ହେଇ ରହିଥାଏ । ଏମିତି ସୁଯୋଗ ଦେଖି 'ପାଇକ୍' ମଧ୍ୟ ଖେଙ୍କାରି ଆସିଲା 'ସ୍ପିଜ୍'ଆଡ଼କୁ । ଆଉ ଟିକିଏ ହେଇଥିଲେ 'ବକ୍' ଆଉ 'ପାଇକ୍' ଲହୁଲୁହାଣ କରିପକେଇଥାନ୍ତେ 'ସ୍ପିଜ୍'କୁ ।

କିନ୍ତୁ ଫ୍ରାଙ୍କୋସ୍ ଆସି ପହଞ୍ଚିଗଲେ ସେମାନଙ୍କ ପାଖରେ । ଦଳର ଶୃଙ୍ଖଳା ଭାଙ୍ଗିଥିବାରୁ ଚାବୁକ ଧରି ସେ ନିସ୍ତୁକ୍ ପିଟିଲେ ସେମାନଙ୍କୁ । 'ବକ୍' 'ସ୍ପିଜ୍' 'ପାଇକ୍' ସମସ୍ତେ ମାଡ଼ଖାଇ କ୍ୟାଉଁ କ୍ୟାଉଁ ରଡ଼ିଛାଡ଼ି ଫେରିଆସିଲେ ସ୍ଲେଜ୍‌ଗାଡ଼ି ପାଖକୁ ।

ତା'ପରେ 'ବକ୍' ପ୍ରାୟ ସବୁଦିନେ 'ସ୍ପିଜ୍' ପଛରେ ଲାଗି ରହିଲା । ଯେତେବେଳେ 'ସ୍ପିଜ୍' ମୁରବିପଣିଆ ଦେଖେଇ ଅନ୍ୟ କାହାକୁ ଦଣ୍ଡ ଦେବାପାଇଁ ଚାହିଁଲା, ସେ ଦଉଡ଼ି ଆସି ତା'ର ବିରୋଧ କଲା । ଅନ୍ୟ କୁକୁରମାନେ ଭୁଲ କରନ୍ତୁ ଠିକ୍ କରନ୍ତୁ, ସେମାନଙ୍କ ପଟିଆ ହେଇ 'ସ୍ପିଜ୍' ସହିତ ଲଢ଼େଇ କରିବାକୁ ସବୁବେଳେ ପ୍ରସ୍ତୁତ ହୋଇ ରହିଲା । ମାତ୍ର ଫ୍ରାଙ୍କୋସ୍‌ଙ୍କ ଉପସ୍ଥିତିରେ ଯେମିତି କିଛି ଅଗଡ଼ବଗଡ଼ ନ ହୁଏ ସେଥିପାଇଁ ସତର୍କ



Digitized by srujanika@gmail.com

ରହିଲା ସେ । ଏଣିକି 'ଡାଭେ' ଏବଂ 'ସୋଲେକ୍ସ'କୁ ଛାଡ଼ିଦେଲେ ଆଉ କେହି ପ୍ରାୟ 'ସ୍ପିଜ୍' କଥା ମାନିବାକୁ ପ୍ରସ୍ତୁତ ନ ଥିଲେ । 'ଡାଭେ' ଓ 'ସୋଲେକ୍ସ' ଉଭୟେ ଶାନ୍ତ, କର୍ମଠ ଏବଂ ବଳୁଆ । ଦଳର ନେତା ଯିଏ ହେଉ ନା କାହିଁକି, ସେମାନେ ନିଜ କାମ ଓ ନିଜ କଥା ଛଡ଼ା ଆଉ କୋଉଥିରେ ମୁଣ୍ଡ ଖେଳାନ୍ତି ନାହିଁ ।

ଦଳ ଭିତରେ ଏବେ ବିଶୃଙ୍ଖଳା ଚାଲିଲା । 'ସ୍ପିଜ୍'ର ଶାସନକୁ କେହି ଆଉ ମାନିଲେନି । ତା'ର ନେତୃତ୍ୱକୁ ସ୍ୱୀକାର କଲେନି । 'ବକ୍' ପଛରେ ଥାଇ ସେସବୁ କଥାକୁ ଉତ୍ସାହିତ କରୁଥାଏ । ଶେଷକୁ ଏମିତି ହେଲା ଯେ ଦିନେ 'ପାଇକ୍', 'ସ୍ପିଜ୍'ଠାରୁ ତା' ମାଛଭାଗର ଅଧା ଖାଇଦେଲା । ସ୍ପିଜ୍ ପାଖରୁ 'ପାଇକ୍' ମାଛ ଆଣିଲାବେଳେ ବକ୍ ସେମାନଙ୍କ ମଝିରେ ଠିଆ ହୋଇ 'ପାଇକ୍'କୁ ସୁରକ୍ଷା ଦେଲା । ସ୍ପିଜ୍ ରାଗରେ ଗାଉଁ ଗାଉଁ ହଉଥିଲେ ବି କାମୁଡ଼ାକାମୁଡ଼ି କରିବାକୁ ସାହସ କଲାନି । 'ଡବ୍' ଏବଂ 'ଜୋ' ଦିନେ 'ସ୍ପିଜ୍'କୁ ବେଖାତିର କରି ତା' କଥା ଅମାନ୍ୟ କଲେ । ଓଲଟି ଖିଙ୍କାରି ଗୋଡ଼େଇଲେ । ପାଖରେ 'ବକ୍' ଠିଆହୋଇ ସେ ଦୁଇ ଜଣଙ୍କୁ ବାହାବା ଦେଉଥାଏ ।

ଧୀରେ ଧୀରେ 'ସ୍ପିଜ୍'କୁ ଆଉ କୌଣସି କୁକୁର ଖାତିର୍ କଲେନି । ସେମାନେ ବକ୍‌ର ଆଦେଶ ଶୁଣିବାପାଇଁ ଅଧିକ ପସନ୍ଦ କଲେ । ବକ୍ ମଧ ଏଣିକି ସ୍ପିଜ୍‌କୁ ଦେଖିବାମାତ୍ରେ ଖାଲି ଗାଉଁ ଗାଉଁ ହେବାକୁ ଲାଗିଲା ।

ଦଳ ଭିତରେ ଯେ ଏଭଳି ବିଦ୍ରୋହ ସୀମିତ ଥିଲା ସେ କଥା ନୁହେଁ । ଗାଡ଼ି ଟଣାବେଳେ ବି ବିଦ୍ରୋହର ପ୍ରତିକ୍ରିୟା ପ୍ରକାଶ ପାଇଲା । ଆଗରୁ କେଡ଼େ ସୁନ୍ଦର ମିଳିମିଶି ଏକମନ ହେଇ ସମସ୍ତେ ଗାଡ଼ି ଟାଣୁଥିଲେ । କିନ୍ତୁ ଏବେ ସେଥିରେ ବିଭ୍ରାଟ ଦେଖାଦେଲା । କିଏ ନିଜକୁ ଜାଣି ଜାଣି ଛନ୍ଦିଲା ତ କିଏ ଲଗାମ୍‌କୁ କାମୁଡ଼ି ଛିଣ୍ଡେଇ ପକେଇଲା । ନ ହେଲେ ଆଉ କିଏ ଦଉଡ଼ିଲାବେଳେ ଖାଲି ଏକଡ଼ ସେକଡ଼ ହେଲା ।

ତେଣୁ ସ୍ଲେଜ୍ ଗାଡ଼ି ଆଗେଇବାରେ ବହୁତ ବିଳମ୍ବ ହେଲା । ଥରକୁ ଥର ଅଟକିବାକୁ ପଡ଼ିଲା । ଫ୍ରାଙ୍କୋସ୍ ମଝିରେ ମଝିରେ ରାଗି ସମସ୍ତଙ୍କୁ ଚାବୁକ୍‌ରେ ପିଟିବାକୁ ଲାଗିଲେ । 'ସ୍ପିଜ୍'କୁ ମାନିବାପାଇଁ ସେ ସମସ୍ତଙ୍କୁ ଆଦେଶ ଦେଲେ ବାରମ୍ବାର । ହେଲେ ଶୁଣୁଚି କିଏ ? ସେ ଜାଣିସାରିଥାଆନ୍ତି ଯେ ଏସବୁ କାମ 'ବକ୍'ର ଇସାରାରେ ହିଁ ହଉଚି । ମାତ୍ର 'ବକ୍' ଧରାପଡୁ ନ ଥାଏ କେବେ । ସେଇ ଯାହା 'ପାଇକ୍'ର ସପକ୍ଷ ହେଇ 'ସ୍ପିଜ୍' ସହ ଲଢ଼େଇ କରିବାକୁ ବାହାରି ସେ ଧରାପଡ଼ିଥିଲା, ସେତିକି ।



Digitized by srujanika@gmail.com

'ଡସନ୍' ଆଡ଼କୁ ଧୀର ମନ୍ଥର ଗତିରେ ଚାଲିଥାଏ ସ୍ଲେଜ୍ ଗାଡ଼ି । ଦଳର ଶୃଙ୍ଖଳା ଆଉ ନ ଥାଏ । ନିର୍ଦ୍ଦିଷ୍ଟ ଦିନ ଗଡ଼ି ଯାଉଥାଏବୋଲି ପେରଲ୍‌ଟ ବ୍ୟସ୍ତ ହୋଇ ପଡୁଥାଆନ୍ତି । ତେଣୁ ଫ୍ରାଙ୍କୋସ୍‌ଙ୍କ ଉପରେ ସେ ଚିଡ଼ି ଉଠୁଥାନ୍ତି ବେଳେବେଳେ ।

ଏଣେ 'ସ୍ପିଜ୍' ନେତୃତ୍ୱର ପତନ ଦେଖି ମନେ ମନେ ହସୁଥାଏ 'ବକ୍' ।

ଗୋଟିଏ ରାତିର ଘଟଣା । ଖିଆପିଆ ସରିଥାଏ । ଏତିକିବେଳେ 'ଡବ୍' ଦେଖିଲା ଗୋଟେ ଥାକୁଲୁ ଥୁକୁଲୁ ଧଳା ଠେକୁଆ ଡେଇଁ ଡେଇଁ ଯାଉଚି । ସିଏ କି ଆଉ ଛାଡ଼େ । ମାରିଲା ଗୋଟେ ଡିଆଁ ତା' ଉପରକୁ । ମାତ୍ର ଠିକଣା କରି ପହଞ୍ଚି ପାରିଲାନି ଠେକୁଆ ପାଖରେ । ଆଉ ଟିକିଏ ଜୋର୍ କରି ଡେଇଁଥିଲେ ହୋଇଥାନ୍ତା ବୋଧେ ।

ଏଇ ଭିତରେ ସାରା ଦଳଟାଯାକର କୁକୁର ଧାଇଁଲେ ସେ ଠେକୁଆ ପଛରେ । ଠେକୁଆ ଏଥର ନଈ କୂଳେ କୂଳେ ପବନ ବେଗରେ ମାରିଲା ଡିଆଁ । ତାଙ୍କ ଦେଖାଦେଖି ପାଖରେ ଥିବା ପୋଲିସ୍ କ୍ୟାମ୍ପର ପଚାଶ ସରିକି ହସ୍କି କୁକୁର ମଧ୍ୟ ସେଇ ଠେକୁଆ ପଛରେ ଗୋଡ଼େଇବାରେ ଲାଗିଲେ । ଠେକୁଆଟି ଦଉଡ଼ି ଦଉଡ଼ି ଚଟାଣରେ ଥିବା ଗୋଟେ ଫାଟ ଭିତରେ ପଶିଗଲା ବିକଳ ହୋଇ ।

ଠେକୁଆଟି ସିନା ଛୋଟ ଜୀବଟିଏ ବୋଲି ଫାଟ ଭିତରେ ପଶିଗଲା, ହେଲେ କୁକୁରମାନେ ତାକୁ ଆଉ ଛୁଇଁ ପାରୁଛନ୍ତି କୋଉଠି ? ଏବେ ସମସ୍ତେ ଲାଗିଗଲେ ଗୋଡ଼ରେ ରାମ୍ପୁଡ଼ି ବରଫ ଖୋଳିବାରେ । 'ବକ୍' ସମସ୍ତଙ୍କ ଭିତରେ ବେଶି ବେଶି ଖୋଳି ପାରୁଥାଏ । ଦଳଟା ଭିତରେ ବକ୍ ଭଳି ଏତେ ବଡ଼ ବଡ଼ ଗୋଡ଼ ଆଉ ମୁନିଆ ନଖ ନ ଥାଏ କାହାର ।

ଜହ୍ନ କିରଣ ବିଛୁଡ଼ି ପଡ଼ିଥାଏ ଚାରିଆଡ଼େ । ବରଫ ଖୋଳି ଖୋଳି ଫାଟ ଭିତରେ ଭିତରେ ମାଡ଼ି ଯାଉଥାଏ ବକ୍ । ମାତ୍ର ଠେକୁଆଟା ତହୁଁ ଚାଲାକ୍ । ସେ ଭିତରକୁ ପଶି ପଶି ଯାଉଥାଏ ଆହୁରି ।

'ସ୍ପିଜ୍' କିନ୍ତୁ ବରଫ ଅଞ୍ଚଳରେ ଶିକାର କରିବାରେ ବେଶ୍ ଦୋରସ୍ତ । ତେଣୁ, ସେ ଦଳ ଛାଡ଼ି ନଈ ଦାଡ଼ ସେପଟୁ ପଛୁଆ ପଛୁଆ ଖୋଳି ଠେକୁଆଟାକୁ ଧରିବାକୁ ଚେଷ୍ଟା କଲା । ଫାଟ ଭିତରେ ପଶି ପଶି ଠେକୁଆ ନଈକୂଳ ପାଖାପାଖି ହେଇ ସାରିଥାଏ ସେତେବେଳକୁ । 'ସ୍ପିଜ୍'କୁ ଠେକୁଆ ଯେମିତି ଦେଖି ଦେଇଚି, ଫାଟରୁ ବାହାରି ମାରିଲା ଗୋଟେ ବିରାଟ ଡିଆଁ । ସତେ ଯେମିତି ଜହ୍ନ ଆଲୁଅରେ ଧଳା ପେଣ୍ଡୁଟାଏ ଆକାଶକୁ ଉଠିଯାଇ ଧଡ଼କିନା ପଡ଼ିଲା ଆସି ତଳେ । ଦଳର ଅନ୍ୟ କୁକୁରମାନେ ସେଠି ପହଞ୍ଚିବା



Digitized by srujanika@gmail.com

ପୂର୍ବରୁ 'ସ୍ପିଜ୍' ଏକା ଖେପାକେ ସେଠି ପହଞ୍ଚି କାମୁଡ଼ି ଧରିଲା ତାକୁ । 'ସ୍ପିଜ୍'ର ଦୁଇ ଧାଡ଼ି ମୁନିଆ ଦାନ୍ତ ଭିତରେ ବିଚରା ଶେଷ ହୋଇଗଲା ସେଇଠି ।

'ବକ୍' ମୁଣ୍ଡ ଉଠେଇ ଦେଖେ ତ 'ସ୍ପିଜ୍' ପାଟି ଭିତରେ ଠେକୁଆ । ଏ କଥା ଦେଖି ସେ ଆଉ ନିଜକୁ ସମ୍ଭାଳି ପାରିଲାନି । ପ୍ରତିହିଂସାରେ ଆଖି ଦୁଇଟା ତା'ର ରଡ଼ ନିଆଁପରି ଦପ୍ ଦପ୍ ଜଳି ଉଠିଲା । ସେ ମନକୁ ମନ କହିଲା, ''ନା, ଆଉ ନୁହେଁ । ଏଇ ହଉଚି ଅସଲ ସମୟ । ଏଥର ସ୍ପିଜ୍ ତା'ର ଫଳ ପାଇବ । ଦେହରେ ଟୋପେ ରକ୍ତ ଥିବାଯାଏଁ ମୁଁ ତା ସହ ଲଢ଼ିବି । ତେଣିକି ସେ ରହିବ ନ ହେଲେ ମୁଁ ରହିବି ।''

ସେଇ ବରଫ ଖୋଳା ଥାନରୁ ବକ୍ ମାରିଲା ଗୋଟେ କୁଦା ସ୍ପିଜ୍ ଉପରକୁ । ତା'ର ଦୁଇ ଗୋଡ଼ ଆସି ବାଜିଲା ସ୍ପିଜ୍‌ର କାନ୍ଧ ଉପରେ । ନିଜକୁ ସମ୍ଭାଳିବା ପୂର୍ବରୁ ସେ ଦୁହେଁ ଝୁର୍ ଝୁର୍ ବରଫ ଭିତରେ ଖସଡ଼ି ଗଲେ ଖଣ୍ଡେ ଦୂରକୁ ଧସ୍ତାଧସ୍ତି ହୋଇ ।

ଏଥର ଦୁଇ ଜଣଯାକ ସାମନାସାମନି ଠିଆ ହୋଇ ରହିଲେ । ଧଡ଼୍ କିନା ବୁଲିପଡ଼ି ଏତିକିବେଳେ ସ୍ପିଜ୍ ଗୋଟାଏ ଚୋଟ ବସେଇ ଦେଲା 'ବକ୍'ର କାନ୍ଧରେ । 'ବକ୍'ପ୍ରସ୍ତୁତ ହଉ ହଉ ସେ ପୁଣି ଡେଇଁ ପଡ଼ିଲା ଆରପଟକୁ । ତା' ପରେ ସେମାନେ ପରସ୍ପରକୁ ଆକ୍ରମଣ କରିବାପାଇଁ ସେଠି ଚକ୍ରାକାରରେ ବୁଲିବାକୁ ଲାଗିଲେ । ଉଭୟେ ଉଭୟଙ୍କର ଦୁର୍ବଳତା କଥା ବିଚାରି ସୁଯୋଗ ଅପେକ୍ଷାରେ ମୁହାଁମୁହିଁ ହୋଇ ଗାଉଁ ଗାଉଁ ହଉଥାନ୍ତି ।

ଏଣେ ସ୍ପିଜ୍ ପାଟିରୁ ଖସି ପଡ଼ିଥିବା ଖଣ୍ଡିଆ ଖାବରା ମଲା ଠେକୁଆଟିକୁ ଦଳକ ଯାକ କୁକୁର ମିଶି ଭିଣା ଭିଣି କରି ଚଳୁ କରି ସାରିଥାଆନ୍ତି । 'ବକ୍' ଆଉ 'ସ୍ପିଜ୍'ଙ୍କ ଭିତରେ ଆରମ୍ଭ ହୋଇଥିବା ମରଣାନ୍ତକ ସଂଗ୍ରାମକୁ ଦେଖିବାପାଇଁ ଏବେ ସେମାନେ ଆସି ଠିଆ ହୋଇଗଲେ ଟିକିଏ ଦୂରରେ ।

ସଭିଏଁ ଅନୁମାନ କରି ସାରିଥାଆନ୍ତି ଯେ ଦୁଇ ଜଣଙ୍କ ଭିତରୁ ଆଜି ଜଣେ ହେଲେ କିଏ ମରିବ ନିଶ୍ଚୟ । କିନ୍ତୁ କିଏ ମରିବ ସେ କଥା ଠଉରେଇବା ଥିଲା କଷ୍ଟକର ।

ପରସ୍ପର ଲଢ଼େଇରେ ସ୍ପିଜ୍‌ର ଅଭିଜ୍ଞତା ଅଧିକ । ଜୀବନରେ କେତେ କେତେ କୁକୁରଙ୍କୁ ସାମ୍ନା କରିଚି ସିଏ । ସେ ଜାଣେ କେଉଁ ଜାତିର କୁକୁରଙ୍କୁ କିଭଳି ବାଗରେ ଅକ୍ତିଆର କରିବାକୁ ପଡ଼ିବ । ଅତି ଚାଲାକ୍ ଏବଂ ନୃଶଂସଭାବେ ସେ ଆକ୍ରମଣ କରି କାବୁ କରିପାରେ ନିଜର ପ୍ରତିପକ୍ଷକୁ ।



Digitized by srujanika@gmail.com

ଛକାଛକି ଲାଗି ରହିଥାଏ । ଉଭୟଙ୍କର ନଜର ପରସ୍ପର ଉପରେ ରହିଥାଏ ନିବଦ୍ଧ ହୋଇ । ବକ୍ ଯେତେ ଥର ଆକ୍ରମଣ କରିବାପାଇଁ କୁଦା ମାରୁଥାଏ, ସବୁ ନିଷ୍ଫଳ ହେଉଥାଏ ଶେଷରେ । ସ୍ପିଜ୍ ବେଶ୍ ସହଜରେ ମୁକାବିଲା କରି ହଟେଇ ନେଉଥାଏ ଆପଣାର ଶରୀରକୁ । ଓଲଟି ଝାମ୍ପମାରି ବସେଇ ଦେଉଥାଏ ଦାନ୍ତ ବକ୍‌ର କାନ୍ଧ ଉପରେ । ଏଥର ବକ୍ ସ୍ପିଜ୍‌ର ବେକମୂଳକୁ ଝାମ୍ପମାରିବାର ବାହାନା କରି ତା'ର କାନ୍ଧକୁ କାମୁଡ଼ିବାପାଇଁ ଚେଷ୍ଟାକଲା । ସ୍ପିଜ୍‌କୁ ଏ କୌଶଳ କିନ୍ତୁ ବେଶ୍ ଜଣା । ଠିକଣା ବେଳରେ ନିଜକୁ ଘୁଞ୍ଚେଇ ନେଇ ସେ ପୁଣି ଥରେ ବସେଇ ଦେଲା ଏକ ନିର୍ମମ ଚୋଟ । ଧାର ଧାର ହୋଇ ରକ୍ତ ନିଗିଡ଼ି ପଡୁଥାଏ ବକ୍‌ର କାନ୍ଧରୁ ।

ପୁଣି ଥରେ ସେମାନେ ପରସ୍ପର ସାମ୍ନା ସାମ୍ନି ହେଇ ଠିଆ ହୋଇ ରହିଲେ ପରବର୍ତ୍ତୀ ପର୍ଯ୍ୟାୟର ଆକ୍ରମଣପାଇଁ ।

ଦଳର ଅନ୍ୟ କୁକୁରମାନେ ଭାବୁଥିଲେ ଯେ ଲଢ଼େଇଟା ବେଳକୁ ବେଳ ଏକତରଫା ହେବାରେ ଲାଗିଚି । ସ୍ପିଜ୍ ଦେହରେ ସେଯାଏଁ ଦାନ୍ତ କ'ଣ ନଖ ସୁଦ୍ଧା ବାଜି ନ ଥାଏ କେଉଁଠି । ଅଥଚ ଏଣେ ଲହୁଲୁହାଣ ହୋଇସାରିଥାଏ ବକ୍ । ଏଭଳି ଲଢ଼େଇରେ ଥରେ ଯିଏ ହଟିଲା ତା'ର ଆଉ ନିସ୍ତାର ନ ଥାଏ । ଖଣ୍ଡିଆ ଖାବରା ହୋଇ ମରଣାନ୍ତକ ଯୁଦ୍ଧରୁ ମୁକୁଳିବା ହିଂସ୍ର ଜନ୍ତୁଙ୍କର ନୀତି ନୁହେଁ । ହେଲେ ହବ ଚୂଡ଼ାନ୍ତ ବିଜୟ, ନଚେତ୍ ବୀରଗତି ଅର୍ଥାତ୍ ମୃତ୍ୟୁ ।

ବକ୍ ଯେତିକି ଦୁର୍ବଳ ହୋଇପଡୁଥାଏ ସ୍ପିଜ୍ ସେତିକି ସେତିକି ହିଂସ୍ର ହୋଇ ଲମ୍ଫ ମାରିବାକୁ ଉଦ୍ୟମ କରୁଥାଏ ତା' ଉପରକୁ । ବକ୍ ଖସିପଡୁଥାଏ ବାରମ୍ବାର । ଦଳକଯାକ କୁକୁର ଘେରି ଆସୁଥାନ୍ତି ନିକଟରୁ ଆହୁରି ନିକଟକୁ । ମାତ୍ର ବକ୍ ପୁଣି ଥରେ ଧଡ଼ପଡ଼ ହେଇ ଠିଆ ହୋଇଯାଉଥାଏ ନୂଆ ଜୀବନ ପାଇବାଭଳି ।

ପୁଣି ପଛକୁ ହଟିଯାଉଥାନ୍ତି ଦଳର କୁକୁରମାନେ ।

ଏଯାଏଁ ବକ୍ କେବଳ ନିଜ ଦେହର ବଳ ଉପରେ ନିର୍ଭର କରି ଲଢ଼େଇ କରୁଥିଲା । ସେ ଦେଖିଲା, ନାଁ ଏଭଳି ଲଢ଼େଇରେ ଦେହର ବଳ ଯଥେଷ୍ଟ ନୁହେଁ । ଏଥିପାଇଁ ଲୋଡ଼ା ଉପସ୍ଥିତ ବୁଦ୍ଧି । ମୁଣ୍ଡ ଖଟେଇ ସେ ଲଢ଼ିବାକୁ ପ୍ରସ୍ତୁତ ହେଲା ଏବେ । ପୂର୍ବଭଳି ସ୍ପିଜ୍‌ର ବେକ ଉପରେ ଆଖି ରଖିଥିବାବେଳେ କାନ୍ଧ ଆଡ଼କୁ ଡିଆଁମାରି ସେ ପ୍ରକୃତରେ ସ୍ପିଜ୍‌ର ପେଟତଳକୁ ଲେପ୍‌ଟି ପଡ଼ିଲା । ସତେଯେମିତି ସେ ବରଫ ଖୋଳିବାକୁ କୁଦା ମାରିଚି । କିନ୍ତୁ ସ୍ପିଜ୍‌ର ପେଟତଳେ ତା'ର ମୁହଁ ପହଞ୍ଚିବାମାତ୍ରେ



Digitized by srujanika@gmail.com

ଚଟ୍‌କିନା ବୁଲିପଡ଼ି କାମୁଡ଼ି ଧରିଲା ପଛଗୋଡ଼ର ଫଡ଼ିଆକୁ । ଦେହରେ ତା'ର ଅମାପ ଶକ୍ତି । ପାଟିଟା ଏଡ଼େବଡ଼ । ଏତେ ଜୋର୍‌ରେ ସେ କାମୁଡ଼ି ଧରିଲା ଯେ ମଡ଼୍‌କିନା ଭାଙ୍ଗିଗଲା ସ୍ୱିଜ୍‌ର ଫଡ଼ିଆ ହାଡ଼ । ସ୍ୱିଜ୍ ଏଥର ତିନୋଟି ଗୋଡ଼ରେ ଠିଆହାଇ ବକ୍‌କୁ ସାମ୍‌ନାକଲା । ପୁଣି ଥରେ ସେଇ ଏକା କୌଶଳ ପ୍ରୟୋଗକରି ବକ୍ ସ୍ୱିଜ୍‌ର ଆର ପଛ ଗୋଡ଼ଟିକୁ ଭାଙ୍ଗିଦେଲା ମଧ୍ୟ ।

ପଛଗୋଡ଼ ଦୁଇଟି ଭାଙ୍ଗିଯିବାରୁ ସେ ବିଚରା ଅସହାୟ ହୋଇ ଚାହିଁଲା ସମସ୍ତଙ୍କୁ । ଆଖିରେ ତା'ର କାରୁଣ୍ୟ ଫୁଟି ଉଠିଲା । ମାତ୍ର ବକ୍ ଯେମିତି ଅପେକ୍ଷା କରି ରହିଥିଲା ଏହି ସୁଯୋଗକୁ । କୁଦାମାରି ସେ ଏଥର କାମୁଡ଼ି ଧରିଲା ସ୍ୱିଜ୍‌ର ତଣ୍ଟିମୂଳ ।

ବରଫଶୁଭ୍ର ସ୍ୱିଜ୍‌ର ବେକମୂଳରେ ବକ୍‌ର ବିଶାଳ ପାଟିଟା ସଣ୍ଡୁଆଶି ପରି ଚାପି ହୋଇ ରହିଲା ଅନେକ ବେଳଯାଏଁ ।

ତା'ପରେ ବକ୍ ହଟିଆସିଲା ପଛକୁ । ଅସାଡ଼ ହେଇ ପଡ଼ିଥିବା ସ୍ୱିଜ୍‌ର ମଲାଦେହ ଉପରକୁ ମାଡ଼ି ଆସୁଥିଲେ ଅପେକ୍ଷା କରିଥିବା ଦଳର ଅନ୍ୟ କୁକୁରମାନେ । ବକ୍ ମନରେ ସାମାନ୍ୟ ଟିକେ ବି ଅନୁଶୋଚନା ବା ଦୁଃଖ ନ ଥାଏ । ବିଜୟ ଦର୍ପରେ ସେ ଉପଭୋଗ କରୁଥାଏ ସେ ଦୃଶ୍ୟକୁ । ଏବେ ଦଳର ମୁଖ୍ୟ ସେ । ଅପ୍ରତିଦ୍ୱନ୍ଦ୍ୱୀ ରାଜା ।

ଉତ୍ତର ଅଞ୍ଚଳର ଏଇ ନୀତି । ସାଲିସ୍‌ର ପ୍ରଶ୍ନ ନାହିଁ ସେଠି । ମାର ଅବା ମର, ତାହା ହିଁ ଚିରାଚରିତ ବିଧି ।

ପରଦିନ ସକାଳେ ଫ୍ରାଙ୍କୋସ୍ ସବୁ କୁକୁରଙ୍କୁ ଏକାଠି କଲାବେଳେ ଦେଖିଲେ ବକ୍‌ର ସାରା ଶରୀର ଖଣ୍ଡିଆଖାବରାରେ ଭରା । ସ୍ୱିଜ୍‌ର ପତ୍ତା ନାହିଁ କୋଉଠି । ସେ ଜାଣିପାରିଲେ, ନିଶ୍ଚେ ବକ୍ ଆଉ ସ୍ୱିଜ୍ ଭିତରେ କାଲି କେଉଁଠାରେ ଶେଷ ଲଢ଼େଇ ସରିଚି ।

ପେରଲଟ୍‌ଙ୍କୁ ଡାକି ଗୁଣୁଗୁଣୁ ହୋଇ ମନକୁ ମନ କହିଲାଭଳି ସେ କହିଲେ, ''ସ୍ୱିଜ୍‌ଟା ପ୍ରକୃତରେ ଖୁବ୍ ଭଲ କୁକୁରଟାଏ ଥିଲା । ତା'ଭଳି କାମିକା ଆଉ ଲଢୁଆ କୁକୁର ମୁଁ ଦେଖି ନାହିଁ କୋଉଠି । ହେଇଟି ଦେଖ ବକ୍‌ର ଦେହମୁଣ୍ଡ କେମିତି ଖଣ୍ଡିଆଖାବରାରେ ଭର୍ତ୍ତି ।''

''ମାତ୍ର ମୋ ମତରେ ବକ୍ ଭଳି ସ୍ୱିଜ୍ ଲଢ଼େଇ କରିପାରିବନି ।'' କହିଲେ



Digitized by srujanika@gmail.com



ସ୍ପିଜ୍‌ସହ ଶେଷ ଲଢ଼େଇ



Digitized by srujanika@gmail.com

ପେରଲ୍‌ଟ । ''ସେକଥା ହୋଇଥିଲେ ବକ୍ ଜାଗାରେ ସ୍ପିଜ୍ ଆସି ଠିଆ ହୋଇଥାନ୍ତା ଏଠି । ବୁଝିଲ ?'' ସେ ଯାହାହେଉ, ଯାହା ହେଇଚି ଠିକ୍ ହେଇଚି । ସ୍ପିଜ୍ ଯୋଗୁଁ ଗାଡ଼ିଟଣାରେ ଯେଉଁ ତେଢ଼ିଆତେଢ଼ି ଲାଗୁଥିଲା, ସେଇଟା ଅନ୍ତତଃ ଆଉ ହବନି ।''

କୁକୁରମାନଙ୍କୁ ସ୍ଲେଜ୍‌ଗାଡ଼ିରେ ଯୋଚିବା କାମରେ ଲାଗିଲେ ଫ୍ରାଙ୍କୋସ୍ । ସୋଲେକ୍‌ସକୁ ତା' ପୁରୁଣା ଜାଗାରୁ ଆଣି ଆଗରେ ବାନ୍ଧିବାକୁ ନେଲେ । ସେତେବେଳେକୁ କିନ୍ତୁ ଆଗୁଆ ସ୍ଥାନରେ ବକ୍ ଆସି ଠିଆ ହୋଇ ଯାଉଥିଲା ମନକୁ ମନ ।

ବକ୍‌କୁ ସେଠି ଦେଖି ଫ୍ରାଙ୍କୋସ୍ ଖିଙ୍ଗୁଲେଇଲା ପରି କହିଲେ, ''କ'ଣ ? ତୁ ଭାବୁଟୁ ସ୍ପିଜ୍‌କୁ ମାରିଦେଲୁ ବୋଲି ନିଜେ ଦଳର ନେତା ବନିଯିବୁ ? ସେଇଥିପାଇଁ ଆସି ଠିଆ ହୋଇଗଲୁ ଏଠି, ନା ? ଭାଗ୍ ଏଠୁ । ପଛରେ ଯାଇ ନିଜ ଜାଗାରେ ଠିଆ ହଉଚୁ ନା ଦେଖିବୁ ?''

ହେଲେ ବକ୍ ଶୁଣନ୍ତା କାହିଁକି ? ଓଲଟି ଘାଉଁ ଘାଉଁ ହେଇ ମାଡ଼ି ଆସିଲା ସୋଲେକ୍‌ସ ଉପରକୁ । ବିଚରା ସୋଲେକ୍‌ସ ଡରିଯାଇ ଫେରିଗଲା ତା'ର ପୁରୁଣା ସ୍ଥାନକୁ । ବକ୍ ପୁଣି ଆସି ଠିଆ ହେଲା ଆଗରେ । ସେଠୁ ସେ ଟଳିବାକୁ ନାରାଜ୍ । ବାଧ ହୋଇ ତା'ର କଲାର୍‌କୁ ଧରି ଭିଡ଼ି ଭିଡ଼ି ଫ୍ରାଙ୍କୋସ୍ ଘୋଷାରିବାରେ ଲାଗିଲେ ପଛକୁ । ଏଥର ପୁଣି ଥରେ ଚେଷ୍ଟାକଲେ ସୋଲେକ୍‌ସକୁ ଆଣି ଆଗରେ ଯୋଚିବାପାଇଁ । କୁଣ୍ଠୁ କୁଣ୍ଠୁ ହଉଥାଏ ସୋଲେକ୍‌ସ । ଜଣାପଡ଼ିଯାଉଥାଏ ଯେ ବକ୍‌କୁ ଡରି ସେ ଏମିତି ହଉଚି । ସୋଲେକ୍‌ସକୁ ଆଗକୁ ନବାପାଇଁ ଫ୍ରାଙ୍କୋସ୍ ଯେମିତି ଗୋଡ଼ ବଢ଼େଇଚନ୍ତି, ବକ୍ ହଠାତ୍ ଗର୍ଜିଉଠିଲା ତା' ଉପରକୁ । ଡରରେ ସୋଲେକ୍‌ସ ଠିଆହୋଇ ରହିଲା ସେଇଠି !

ଏ ଘଟଣା ଦେଖି ଚିଡ଼ି ଉଠିଲେ ଫ୍ରାଙ୍କୋସ୍ । ଠେଙ୍ଗୁଣି ଉଞ୍ଚେଇ ସେ ଝପଟିଗଲେ । ମାଡ଼ ଭୟରେ ପଛକୁ ହଟିଗଲା ବକ୍ । ତୃତୀୟଥର ଫ୍ରାଙ୍କୋସ୍ ସୋଲେକ୍‌ସକୁ ଭିଡ଼ି ଭିଡ଼ି ଆଣି ଯୋଚିଲେ ଆଗରେ । ବକ୍ ଛଡ଼ା ଅନ୍ୟ ସବୁ କୁକୁରଙ୍କୁ ଜଣ ଜଣ କରି ଯୋଚି ସାରିବାପରେ ସେ ହାତଠାରିଲେ ତା' ଆଡ଼େ । ହେଲେ ସେ ଶୁଣନ୍ତା କାହିଁକି ? ଫ୍ରାଙ୍କୋସ୍ ତାକୁ ଧରିବାପାଇଁ ଯେତିକି ଯେତିକି ଗୋଡ଼ ବଢ଼େଇଲେ ସେ ସେତିକି ସେତିକି ପଛକୁ ଘୁଞ୍ଚିବାରେ ଲାଗିଲା । କାଳେ ଠେଙ୍ଗୁଣି ଦେଖି ଡରୁଚି ଭାବି ଫ୍ରାଙ୍କୋସ୍ ଠେଙ୍ଗୁଣିଟାକୁ ତଳେ ପକେଇଦେଲେ ଓ ଚୁ' ଚୁ' କରି ଡାକିଲେ ।



Digitized by srujanika@gmail.com

କିନ୍ତୁ ବକ୍ କ'ଣ ପ୍ରକୃତରେ ମାଡ଼ପାଇଁ ଡରୁଥିଲା ଯେ ଶୁଣନ୍ତା ? ସ୍ପିଜ୍‌କୁ ମାରି ସେ ଦଳର ନେତା ଆସନ ହାସଲ କରିଚି । ସେ ସ୍ଥାନ ତାକୁ ନ ମିଳିବା ଯାଏଁ, ଯୋଚା ହବାପାଇଁ ସେ ବେକ ଦେଖେଇବନି ମୋଟେ ।

ଘଣ୍ଟାଏ କାଳ ଏକଡ଼ ସେକଡ଼ ହେଇ ଫ୍ରାଙ୍କୋସ୍ ଏବଂ ପେରଲ୍‌ଟ ଧାଇଁଲେ ବକ୍ ପଛରେ । ଯୋଉଠୁ ଯାହା ପାଇଲେ ଫୋପାଡ଼ିଲେ ତା' ଉପରକୁ । ବକ୍ ଏମିତି ଚାଲାକି କରି ଧାଉଁଥାଏ ଯେ କିଛି ବାଜୁ ନ ଥାଏ ଦେହରେ । ଶେଷକୁ ବକାଶୋଧା କରି ପାଟିକଲେ ଦୁହେଁ । ବକ୍ ବି ସେମିତି ମୁହଁ ମେଲେଇ ଖିଙ୍କାରି ଗୋଡ଼େଇଲା ସେମାନଙ୍କ ଆଡ଼କୁ ।

କ୍ୟାମ୍ପ୍ ପାଖରୁ ଦୂରକୁ କିନ୍ତୁ ଯାଉ ନ ଥାଏ ବକ୍ । ତା'ମାନେ ଯୋଚା ହେବାପାଇଁ ସେ ଅରାଜି ନୁହେଁ କିନ୍ତୁ ଆଗୁଆ ସ୍ଥାନଟି ମିଳିଲେ ଯାଇ ସେ ବନ୍ଧା ହବାକୁ ରାଜି ହେବ ।

ପେରଲଟ୍ ନିଜ ଘଡ଼ିକୁ ଚାହିଁ ବ୍ୟସ୍ତ ହୋଇଉଠିଲେ । ଘଣ୍ଟାଏ ଆଗରୁ ସେମାନେ କ୍ୟମ୍ପ୍ ଛାଡ଼ିବା କଥା । ଅଯଥାରେ ଏତେ ବିଳମ୍ବ ହୋଇଗଲାଣି । ଫ୍ରାଙ୍କୋସ୍ ରାଗରେ ଖାଲି ଗରଗର ହଉଥାଆନ୍ତି । ଏଥର ସେ ଆଗୁଆ ଜାଗାରୁ ସୋଲେକ୍ସକୁ ଫିଟେଇ ଫେରେଇ ନେଲେ ପଛକୁ । ତା'ପରେ ବକ୍‌କୁ ଡାକିଲେ । ସତେ ଯେମିତି କେତେବେଳୁ ବକ୍ ଅପେକ୍ଷା କରିଥିଲା ଏ ଡାକକୁ । ମନ ତାର ଆନନ୍ଦରେ କୁରୁଳି ଉଠିଲା । ଛାତି ଫୁଲେଇ ସେ ଠିଆ ହୋଇଗଲା ଲଗାମ୍ ଭିଡ଼ା ହୋଇ ଯୋଚା ହବାପାଇଁ ।

ଦଳର ଆଗୁଆ କୁକୁର ଓ ନେତା ବନିଗଲା ସେ ଆଜିଠାରୁ ।

ଏ ନୂଆ ଦାୟିତ୍ୱ ନିର୍ଭୁଲ ଭାବେ ତୁଲେଇବାପାଇଁ ଶପଥ ନେଲା ସେ । ମନରେ ତା'ର ଅଦମ୍ୟ ଉତ୍ସାହ ଉଙ୍କି ମାରିଲା । ନିଜକୁ ଆହୁରି ବଳବାନ୍ ମନେ କରୁଥିଲା ବକ୍ ।

'ଡାଭେ' ଏବଂ 'ସୋଲେକ୍ସ' ଦୁଇ ଜଣଯାକ ନିଷ୍ଠାପର ଏବଂ କର୍ମଠ । କିଏ କ'ଣ କଲା ସେଥିରେ ତାଙ୍କର ଯାଏ ଆସେନା । ନିଜ କାମ ଭଲ ତ ସେମାନେ ଭଲ । କେହି ଅଯଥା ତାଙ୍କ କାମରେ ମୁଣ୍ଡ ପୂରେଇଲେ ସେମାନେ ଭଲ ପାଆନ୍ତିନି । ଅନ୍ୟମାନଙ୍କ କଥା କିନ୍ତୁ ଅଲଗା । ଏଇ କେତେଦିନ ହେବ ଦଳରେ କେମିତି ଗୋଟାଏ ବେପରୁଆ ଢଙ୍ଗ ଆସି ଯାଇଥିଲା । କେହି କାହାକୁ ମାନୁ ନ ଥିଲେ । ମାତ୍ର ବକ୍ ଠିକଣା କରିଦେଲା ସଭିଙ୍କୁ । ସ୍ପିଜ୍ ଆଉ ବକ୍ ଭିତରେ ଝଗଡ଼ା ଲାଗିଥିଲା ବୋଲି ସିନା ଅନ୍ୟମାନେ ତା'ର ଫାଇଦା ନଉଥିଲେ, ହେଲେ ଏବେ ସେ କଥା ଆଉ ନାହିଁ । ବକ୍ ଦଳର ଅପ୍ରତିଦ୍ୱନ୍ଦ୍ୱୀ ନେତା । ଆଉ ବିଶୃଙ୍ଖଳାର ପ୍ରଶ୍ନ ଉଠୁଚି କୋଉଠୁ ?



Digitized by srujanika@gmail.com

ଦୃଢ଼ଭାବରେ ବକ୍ ତା'ର ନେତୃତ୍ୱ ଜାହିର୍ କଲା । 'ପାଇକ୍' କାମରେ ଅଳସୁଆମୀ କରୁଥିଲାବୋଲି ସେ ମାଡ଼ ଦେଲା ତାକୁ । 'ଜୋ' ଏବଂ 'ବିଲି' ବି ଦଣ୍ଡପାଇଲେ ଭୁଲ୍ କାମ କରିଥିବାଯୋଗୁଁ । 'ଡାଭେ' ଆଉ 'ସୋଲେକ୍‌ସ'ଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ପ୍ରାୟ ଚେଙ୍କେ ଲେଖାଏଁ ପାଇଲେ ।

ମାତ୍ର କେଇଟା ଦିନ ଭିତରେ, ପୁଣି ଆଗଭଳି ଏକମନ ଏକପ୍ରାଣ ହେଇ କାମକଲେ ସମସ୍ତେ । ଫ୍ରାଙ୍କୋସ୍ ଏବଂ ପେରଲଟ୍ ବକ୍‌ର ନେତୃତ୍ୱକୁ ପ୍ରଶଂସା ନ କରି ରହିପାରିଲେ ନି । ଦଳର ଗତି ବେଶ୍ ବଢ଼ିଯାଇଥିଲା ଏଇ କେତେଦିନ ଭିତରେ ।

'ରିଙ୍କ୍ ରାପିଡ୍‌ସ୍' ବୋଲି ଗୋଟିଏ ଜାଗାରେ ପୁଣି ଆଉ ଦୁଇଟା ହସ୍କି କୁକୁରଙ୍କୁ ଆଣି ମିଶାଗଲା ଦଳରେ । ସେମାନଙ୍କ ନାଁ 'ଟିକ୍' ଏବଂ 'କୁନା' । ବକ୍ ସେ ନୂଆ କୁକୁର ଦୁଇ ଜଣଙ୍କୁ ଶୀଘ୍ର ମଣ କରିଦେଲା । ଫ୍ରାଙ୍କୋସ୍ ଆଶ୍ଚର୍ଯ୍ୟ ହୋଇଗଲେ ବକ୍‌ର ପାରିଲାପଣିଆଁ ଦେଖି । ଜୀବନରେ କେତେ କେତେ ଦଳର ନେତା-କୁକୁରଙ୍କୁ ଦେଖିଛନ୍ତି ସେ । କିନ୍ତୁ ବକ୍‌ପରି ଏତେ ବିଚକ୍ଷଣ ଏବଂ କୁଶଳୀ କୁକୁର ଦେଖି ନ ଥିଲେ କେବେ ।

ପାଗ ଭଲ ହୋଇ ଯାଇଥିଲା । ବରଫ ପଡ଼ିବା ବନ୍ଦ ହୋଇଯାଇଥିବାରୁ, ପୁରୁଣା ବରଫ ବସିଯାଇ ସ୍ଲେଜ୍‌ଟଣାପାଇଁ ବାଟ ବେଶ୍ ଅନୁକୂଳ ଜଣା ପଡୁଥିଲା । ନଦୀର ଆରପଟ ଧାରରେ ଲମ୍ବିଥିବା ତିରିଶ ମାଇଲ୍ ବାଟକୁ ସେମାନେ ଅତିକ୍ରମ କରିଗଲେ ମାତ୍ର ଗୋଟିଏ ଦିନରେ । ଆଗରୁ ସେତିକି ଦୂରତା ଡେଇଁବାପାଇଁ ଲାଗୁଥିଲା ଦଶଦିନ ।

ସ୍କାଗ୍‌ୱେରେ ଗାଡ଼ି ପହଞ୍ଚିଲା ପରେ ହିସାବ ହେଲା । ଚଉଦ ଦିନକାଳ, ଦିନକୁ ହାରାହାରି ଚାଳିଶ ମାଇଲ୍ ବେଗରେ ରାସ୍ତା ଅତିକ୍ରମ କରିଥିଲେ ସେମାନେ ।

ସ୍ଲେଜଟଣା ଇତିହାସରେ ଏହାଥିଲା ଏକ ରେକର୍ଡ଼ । ଏବଂ ଏ ରେକର୍ଡ଼ର ଅସଲ ହକ୍‌ଦାର ଥିଲା ବକ୍ ।

ଦିନେ ସକାଳେ ଫ୍ରାଙ୍କୋସ୍ ଏବଂ ପେରଲ୍‌ଟ୍ ସରକାରଙ୍କଠାରୁ ଗୋଟିଏ ଚିଠି ପାଇଲେ । କାନାଡ଼ା ସରକାରଙ୍କ ତରଫରୁ ସେମାନଙ୍କୁ ଆଉ ଏକ ନୂଆ କାମରେ ନିଯୁକ୍ତ କରାଯାଇଥିଲା । ସେଠି ସେମାନେ ଆଉ ଖବର ଦବାନବା ଦାୟିତ୍ୱରେ ନ ରହି, ପ୍ରଶିକ୍ଷଣ କାମରେ ରହିବେ । ଅନ୍ୟମାନଙ୍କୁ ଟ୍ରେନିଂ ଦେବେ ।

ଚିଠିଟା ପାଇଲା ପରେ ଫ୍ରାଙ୍କୋସ୍ ବକ୍‌କୁ ପାଖକୁ ଡାକିଲେ । ବେକ ଚାରିପଟେ ହାତଗୁଡ଼େଇ କୁଣ୍ଢେଇ ଧରିଲେ ତା'କୁ । ଆଖିରୁ ଧାର ଧାର ଲୁହ ବୋହିଯାଉଥାଏ ।



Digitized by srujanika@gmail.com

ସେଇଦିନ ସେ ଓ ପେରଲଟ୍ ସବୁ କୁକୁରଙ୍କଠାରୁ ବିଦାୟ ନେଇ ଚାଲିଗଲେ ନିଜର ନୂଆ କର୍ମକ୍ଷେତ୍ରକୁ ।

ବକ୍ ସେମାନଙ୍କୁ ଆଉ ଦେଖିବାକୁ ପାଇଲାନି କେବେ ।

ଏବେ କୁକୁର ଦଳଟିକୁ ପଠେଇ ଦିଆଗଲା ସାଧାରଣ ଡାକଗାଡ଼ି ଟାଣିବାପାଇଁ । ସେଭଳି ଡାକଗାଡ଼ି ଟଣା କାମରେ ଆହୁରି ଅନେକ ଦଳ ମଧ୍ୟ ନିଯୁକ୍ତି ପାଇଥାଆନ୍ତି । ତାକୁ କୁହାଯାଉଥାଏ 'ଲୁଣାପାଣି ଡାକ ସେବା ।' ଉତ୍ତର ଅଞ୍ଚଳର ଚିଠିପତ୍ର ଦକ୍ଷିଣ ଅଞ୍ଚଳକୁ ପଠେଇବାରେ ଏଇ ଡାକସେବା କାମ କରୁଥାଏ । ସୁନା ସନ୍ଧାନରେ ଯାଇ ଭୀଷଣ ବରଫ ଅଞ୍ଚଳରେ ଖଟୁଥିବା ଲୋକଙ୍କର ଚିଠି ପ୍ରାୟତଃ ନିଆଅଣା ହୁଏ 'ଲୁଣାପାଣି ଡାକସେବା' ମାଧ୍ୟମରେ ।

ଏ କାମରେ ଖଟଣି ବେଶି, କିଛି ଶୃଙ୍ଖଳା ବା ଉତ୍ତେଜନା ନ ଥାଏ । ବକ୍‌କୁ ମୋଟେ ପସନ୍ଦ ଲାଗିଲାନି ଏ କାମ ।

ଅଥଚ ସେ କାମରେ ହେଳା କରୁ ନ ଥାଏ କେବେ । ଦଳର ସବୁ କୁକୁରଙ୍କୁ ଏକାଠି କରି ଯେମିତି ସୁରୁଖୁରୁରେ କାମ ହବା କଥା ସେମିତି କରିବାପାଇଁ ଲାଗିଥାଏ ସେ ।

କିନ୍ତୁ ଯେତେ ଯାହାହେଲେ ବି ଏଭଳି କାମରେ ଆନନ୍ଦ ନ ଥାଏ । ସବୁ କେମିତି ଗତାନୁଗତିକ ଏବଂ ବିରକ୍ତିକର । କଳ ଭଳି ରୁଟିନ୍ କାମରେ କ'ଣ କିଛି ମଜା ଥାଏ ? ପ୍ରତ୍ୟେକଦିନ ସତେ ଅବା ଅନ୍ୟ ସବୁଦିନ ପରି । ଚିଡ଼ା ଲାଗୁଥାଏ ବକ୍‌କୁ ।

ଏଠି ସବୁଦିନେ ସେଇ ଏକା କାମ । ଏକା ଦୃଶ୍ୟ । ପୂରାପୂରି ସାଧାରଣ । ବଡ଼ ବିରକ୍ତିକର ପ୍ରକୃତରେ ।

ରାତି ନ ପାହୁଣୁ ରାନ୍ଧୁଣିଆମାନେ ପହିଲେ ଉଠିପଡ଼ି ଚୁଲିରେ ନିଆଁ ଧରାନ୍ତି । ଜଳଖିଆ ପ୍ରସ୍ତୁତ ହୁଏ ସକାଳପାଇଁ । ଦଳେ ଆସବାବପତ୍ର ସଜଡ଼ା ସଜଡ଼ି କରୁ କରୁ ଆଉ ଦଳେ ପ୍ରସ୍ତୁତ ହୁଅନ୍ତି ସ୍ଲେଜଗାଡ଼ି ସଜିଲ୍ କରିବାକୁ । କୁକୁରମାନଙ୍କୁ ଆଣି ଗୋଟି ଗୋଟି କରି ଯୋଚାହୁଏ ଗାଡ଼ିରେ । ସକାଳ ହେଇ ପୂରା ଆଲୁଅ ପଡ଼ିଲାବେଳକୁ ସେମାନେ ଘଣ୍ଟାଏ ଖଣ୍ଡେ ଆଗେଇ ଯାଇଥାଆନ୍ତି କାମରେ । ପୁଣି ରାତିହେଲେ କ୍ୟାମ୍ପ ପଡ଼େ । ତମ୍ବୁ ଟଣା ହୁଏ । କିଏ ଜାଳେଣିପାଇଁ କାଠ ହାଣେ ତ ଆଉ କିଏ ଶେଯ ବିଛେଇବାପାଇଁ ପାଇନ୍ ଗଛର କଅଁଳ ଡାଳ ଭାଙ୍ଗି ଆଣି ଗଦା କରେ । ଆଉ କେହି



Digitized by srujanika@gmail.com

ବି ରନ୍ଧା ହବାପାଇଁ ପାଣି ଯୋଗାଡ଼ କରେ । ଏଇଭଳି ସଭିଏଁ ଲାଗିଥାନ୍ତି ଧରାବନ୍ଧା କାମରେ ।

କ୍ୟାମ୍ପ ପଡ଼ିବା ସଙ୍ଗେ ସଙ୍ଗେ କୁକୁରମାନଙ୍କୁ, ମାଛ ଖାଇବାକୁ ଦିଆଯାଏ । ଖାଇସାରି ସେମାନେ ଘଣ୍ଟାଏ ଖଣ୍ଡେ ସେଠି ନଙ୍ଗର ପଙ୍ଗର ହୁଅନ୍ତି । ଖୁପୁରା ଖୁପୁରି ହୁଅନ୍ତି ପରସ୍ପର ଭିତରେ । ସବୁମିଶି ପ୍ରାୟ ପଚାଶ ଜଣ କୁକୁର ଥାଆନ୍ତି ସେଠି । ତାଙ୍କ ଭିତରେ କେତୁଟା ବଡ଼ ଦୁର୍ଦ୍ଧର୍ଷ ପ୍ରକୃତିର କୁକୁର ବି ଥାଆନ୍ତି । ବକ୍ ଏ ଭିତରେ ତିନି ତିନି ଥର ଲଢ଼େଇ କରି ସେମାନଙ୍କୁ ସବୁ ପରାସ୍ତ କରି ସାରିଥାଏ । ସେଇଥିପାଇଁ ସେ ଯେତେବେଳେ ରାଗେ କି ସାମାନ୍ୟ ଟିକିଏ ଗାଉଁ ଗାଉଁ ହୁଏ, ଅନ୍ୟମାନେ ହଟିଯାଆନ୍ତି ତା' ସାମନାରୁ ।

ବକ୍ ପ୍ରଚୁର ଖାଏ । ଖାଇବାଟା ତା'ପାଇଁ ସବୁବେଳେ ଗୁରୁତ୍ୱପୂର୍ଣ୍ଣ । ସାରା ଦଳଟା ଭିତରେ ସେ ବର୍ତ୍ତମାନ ମାଷ୍ଟର । ତା'ର ଖାତିର ନ ଥାଏ କାହାକୁ । କିନ୍ତୁ ବେଳେବେଳେ ତା'ର ଇଚ୍ଛା ହୁଏ ସବୁ କାମ ଛାଡ଼ି କୁଆଡ଼େ ପଳେଇ ଯିବାକୁ । ସେ ଭାବେ କୋଉଠି ଟିକେ ନିଆଁ ପାଖରେ ଗୋଡ଼ ପକେଇ ବସନ୍ତା । ଚାହିଁ ରହନ୍ତା ନିଆଁର ଲହ ଲହ ଶିଖାକୁ । ନିଆଁ କଥା ଭାବୁ ଭାବୁ ସେ ମନେପକାଏ ମିଷ୍ଟର୍ ମିଲର୍‌ଙ୍କୁ । କାଲିଫର୍ଣ୍ଣିଆ ସହରର ସେ ବିରାଟ ଘର । ତା' ଭିତରେ ପହଁରିବାପାଇଁ ପୋଖରୀ, ଘୋଡ଼ାଶାଳ । କେବେ କେବେ ମୋର୍ଗାନ ଏବଂ ତା'ଠାରୁ ଠେଙ୍ଗୁଣି ପାହାର ଖାଇଥିବା କଥା ବି ମନେପଡ଼େ । ପୁଣି ମନେପଡ଼େ କର୍ଲିର ଅସହାୟ ମରଣ ଏବଂ ସ୍ପିଜ୍ ସହ ତା'ର ମରଣାନ୍ତକ ଲଢ଼େଇ କଥା ।

ଆପଣା ଭିତରେ କେମିତି ଏକ ପ୍ରକାର ତରଳିଯାଏ ବକ୍ ।

ନିଆଁ ଶିଖାର ସ୍ୱପ୍ନ ଦେଖୁ ଦେଖୁ ସେ ଅନୁଭବ କରେ ଯେ ଏ ନିଆଁ ସାଧାରଣ ନିଆଁ ନୁହେଁ । କୋଉ ଆଦିମ ଅତୀତକାଳରୁ ତାହା ଜଳୁଚି ହୁତୁ ହୁତୁ ହୋଇ । ତା' ପାଖରେ ଗୋଡ଼ ପକେଇ ବସିଚି କୁକୁର ଜାତିର ଆଦିମ ପୂର୍ବପୁରୁଷ । ସେଇଠି ସେ ଆଦିମ କୁକୁର ପାଖରେ ଠିଆ ହୋଇଚି ଗୋଟେ ମଣିଷ- ଆଦିମ ମଣିଷ । ଦେହଯାକ ବାଳ । ମୁଣ୍ଡ ଭୂତୁରା । ମୁହଁଟା କେମିତି ଅଲଗା ।

ଆଜିକାଲିକା ମଣିଷଙ୍କପରି ନୁହେଁ । ଗୋଡ଼ ଦୁଇଟା ସାନ ସାନ, ମାତ୍ର ହାତ ଦୁଇଟା ବେଶ୍ ଲମ୍ବା ଲମ୍ବା । ଅନ୍ଧାରକୁ ବଡ଼ ଡର ତା'ର । ଟିକିଏ କୋଉଠି ଖୁଡ଼୍‌କିନା ହେଲେ ଚମକି ପଡୁଥାଏ ମଣିଷଟା ।



Digitized by srujanika@gmail.com

ସେ ନିଆଁ, ଆଉ ତା ଚାରିପଟେ ଘେରିଥିବା ଅନ୍ଧାର ଭିତରେ, ଦୂରରୁ ବକ୍‌କୁ ଦେଖାଯାଏ ହଳ ହଳ ଜଳନ୍ତା ଆଖି। ସେ ଜାଣେ ଏ ଆଖି ହିଂସ୍ର ପ୍ରାଣୀମାନଙ୍କର ଆଖି। ସବୁକାଳେ ଏ ହିଂସ୍ରପ୍ରାଣୀମାନେ ଛପି ଥାଆନ୍ତି ଅନ୍ଧାର ଭିତରେ। ଆଦିମ ମଣିଷ ଖୁବ୍ ଡରୁଥିଲା ଏମାନଙ୍କୁ। ସେଇଥିପାଇଁ ତ ସେ ନିଆଁ ଆଉ କୁକୁରଙ୍କୁ ଏମିତି ଆପଣାର କରିଥିଲା। ଖାସ୍ ହିଂସ୍ର ଜନ୍ତୁଙ୍କଠାରୁ ରକ୍ଷା ପାଇବାପାଇଁ।

ଏଇଭଳି ବକ୍, ବେଳେବେଳେ ଅଜବ କଥାମାନ ଭାବି ବସେ। ନ ଦେଖିଥିବା, ନ ଶୁଣିଥିବା ଦୃଶ୍ୟମାନ ଭାସିଯାଏ ତା' ମନ ଭିତରେ। ଆଦିମ ଜୀବନର ଅବିକଳ ଛବି ଆଉ ସ୍ୱର ତାକୁ ଅସ୍ତବ୍ୟସ୍ତ କରେ। ସ୍ୱପ୍ନରେ ସେ ବିଳିବିଳେଇ ଉଠେ।

ସତେ ଯେମିତି ଏ ନିଆଁ, ସବୁ ସ୍ମୃତିର ବାହକ। ପ୍ରାଚୀନକାଳରୁ ପୁରୁଷ ପରେ ପୁରୁଷ, ଯୁଗ ପରେ ଯୁଗ ନିଆଁର ଲହ ଲହ ଶିଖା ବିତରଣ କରି ଚାଲିଚି ଅତୀତ ଦିନର ସ୍ମୃତିମାନ। ନ ହେଲେ, କାହିଁ ସେ ଆଦିମ ମଣିଷର ଜଙ୍ଗଲ ଜୀବନ ଓ ଗୁମ୍ଫା, ଆଉ ଆଜିର ସଭ୍ୟ ଜୀବନ ? ଅତୀତ ଜଳ ଜଳ ହୋଇ ଆଉଟି ହୁଏ ମନ ଭିତରେ। ଆଖି ବୁଜିଦେଲେ ଅତୀତ ଭାସି ଆସେ ଜୀବନ୍ତ ହୋଇ।

ମଣିଷ ହଉ କି ପଶୁ ହଉ, ଅତୀତ ତାକୁ କେବେ ଛାଡ଼େନା। ଯେତେ ଚେଷ୍ଟାକଲେ ବି ନିଆଁ ଶିଖାପରି ତାହା ଝକ୍ ଝକ୍ କରୁଥାଏ ସ୍ମୃତିପଟରେ ରହି ରହି। ସେଇଥିପାଇଁ ଆଜି ବକ୍, ଏତେ ଦୂରରେ, ଏ ତୁନ୍ଦ୍ରା ଅଞ୍ଚଳରେ ବି ଦେଖିପାରୁଚି ତା'ର ଅତୀତକୁ ଅବିକଳ ଭାବେ।

'ଲୁଣାପାଣି ଡାକସେବା' କାମରେ ବକ୍ ଏବଂ ତାର ଦଳ ଡସନ୍‌ରୁ ସ୍କାଗ୍‌ୱେ ଛାଡ଼ିଲାବେଳକୁ ବରଫ ପଡ଼ିବା ଆରମ୍ଭ ହୋଇଯାଇଥିଲା। ତା'ମାନେ ଗାଡ଼ି ଆଉ ଚାଲିପାରିବନି। ନୂଆ ବରଫଯୋଗୁଁ ବାଲିରେ ଭିଡ଼ିଲାଭଳି ଭିଡ଼ିହେବ ସ୍ଲେଜ୍‌ଗାଡ଼ି। ତେଣୁ ବଡ଼ କଷ୍ଟ ପଡ଼ିବ କୁକୁରମାନଙ୍କୁ।

ଶୀତଦିନ ଆରମ୍ଭ ହେବାଦିନୁ ଏ ଭିତରେ ସେମାନେ ଅଠର ଶହ ମାଇଲ୍ ବାଟ ଗାଡ଼ି ଟାଣି ସାରିଥିଲେ। କାମ କରିବାର ତ ପୁଣି ଗୋଟାଏ ସୀମା ଅଛି। ତେଣୁ ସ୍ୱାଭାବିକଭାବେ ସେମାନେ କ୍ଲାନ୍ତ ହୋଇପଡ଼ିଥିଲେ। ବିଚରା 'ବିଲି' ଗୋଟିଏ ଶାନ୍ତଶିଷ୍ଟ କୁକୁର। ରାତିସାରା ଖୁଁ ଖୁଁ କାଶୁଥାଏ ସେ ନିଦରେ।

ପ୍ରାୟ ତିରିଶ ଦିନପରେ ବକ୍ ଏବଂ ତା' ଦଳର ପଚାଶ ଜଣଯାକ କୁକୁର, ପ୍ରାଣପଣେ ଚେଷ୍ଟାକରି ପହଞ୍ଚିଗଲେ ସ୍କାଗ୍-ୱେରେ। ସେତେବେଳକୁ ସମସ୍ତଙ୍କର ଅବସ୍ଥା



Digitized by srujanika@gmail.com



ଅତୀତସହ ମୁହାଁମୁହିଁ



Digitized by srujanika@gmail.com

ସଙ୍କଟାପନ୍ନ । ବକ୍‌ର ଓଜନ ଏକଶହ ଚାଳିଶ ପାଉଣ୍ଡରୁ ଖସି ପହଞ୍ଚିଯାଇଥିଲା ଏକ ଶହ ପନ୍ଦରରେ । ଦଳର କୁକୁରମାନଙ୍କ ଭିତରୁ କିଏ ଛୋଟାଉଥିଲା ତ କିଏ ଗୋଡ଼ ଘୋଷାରି ଚାଲୁଥିଲା । ସଭିଏଁ ଦରମରା ହୋଇଯାଇଥିଲେ ଖଟି ଖଟି । ଠିଆ ହେବାକୁ ବି ବଳ ନ ଥାଏ ଦେହରେ । ଗଡ଼ାଣି ବାଟରେ ଗଲାବେଳେ ପ୍ରାଣମୂର୍ଚ୍ଛା ହୋଇ ସେମାନେ ଆଡ଼ହୋଇ ଯାଉଥାଆନ୍ତି, କାଳେ ସ୍ଲେଜଗାଡ଼ି ପଛରୁ ଖସିଆସି ମାଡ଼ିଯିବ ପରା ।

ଗାଡ଼ିଚାଳକମାନେ ଭାବିଥିଲେ, ଏଥର ଟିକେ ଅଧିକ ବିଶ୍ରାମ ମିଳିବ । ମାତ୍ର ଡାକବ୍ୟାଗ୍ ସବୁ ଗଦା ହୋଇଯାଇଥିଲା କାହିଁରେ କ'ଣ । ପୁଣି ସେସବୁ ନେଇ ଫେରିବାକୁ ପଡ଼ିବ । ଡାକ କାମରେ ବିଳମ୍ବ କଲେ ଚଳିବନି । ସେଥିପାଇଁ ନୂଆ ତାଗଡ଼ା କୁକୁର ଲୋଡ଼ା । କାମ କରି କରି ହାଲିଆ ହୋଇଯାଉଥିବା କୁକୁରଙ୍କୁ ନେଇ ସେ କାମ ଆଉ ହୋଇପାରିବନି । ଅତଏବ ସେମାନଙ୍କୁ ବିକି ପୁଣି ନୂଆ କୁକୁର କିଣି ଯାତ୍ରା ଆରମ୍ଭ କରିବାକୁ ପଡ଼ିବ । ସ୍କାଗ୍‌ୱେଠାରେ ବକ୍ ଏବଂ ତା'ର ଦଳକୁ ବିକ୍ରିପାଇଁ ରଖାଗଲା । କିଣିବା ଲୋକ ଯିଏ ଆସିଲେ, ସେମାନଙ୍କ ଆଡ଼କୁ ମୁହଁ ଉଠେଇ ଚାହିଁଲେନି ବି ଟିକେ । ଏ ଭିତରେ ତିନି ଦିନ ବିତିଗଲା । କିଏ ବା ସେମାନଙ୍କୁ କିଣନ୍ତା ? ଜାଣିବା ଶୁଣିବା ଲୋକେ ଧୋକଡ଼ା ହୋଇଯାଇଥିବା ଏଭଳି କୁକୁରଙ୍କୁ ମୋଟେ କିଣିବେନି । କିଣିଲେ ଯାହା ପଇସା ତ ଯିବ ଯିବ, ପୁଣି ସେଥିରେ ସେମାନଙ୍କୁ ପୋଷିବାପାଇଁ ଗୁଡ଼ାଏ ଖାଦ୍ୟ ବରବାଦ କରିବାକୁ ପଡ଼ିବ । ଗୁଡ଼େ ଖର୍ଚ୍ଚ କଲେଯାଇ କିଛି ଅବା ବଳ ସେମାନଙ୍କ ଦେହକୁ ଫେରିପାରେ । ନ ହେଲେ ନାଇଁ । ହଡ଼ାକୁକୁର ଗୁଡ଼ାକ !

ଚତୁର୍ଥଦିନ ସକାଳେ ଭାର୍ଜିନିଆର ଦୁଇ ଜଣ ଲୋକ ବକ୍ ଏବଂ ତା'ର ଦଳକୁ ଲଗାମ୍ ସହ ଖୁବ୍ ଶସ୍ତାରେ କିଣିନେଲେ । ସେ ଦୁଇ ଜଣଙ୍କ ଭିତରୁ ଜଣକର ନାଁ ଥିଲା 'ଚାର୍ଲସ୍' । ମଝିଲା ବୟସର ଲୋକଟି । ଆଖିରୁ ତା'ର କାହିଁକି କେଜାଣି ଅନବରତ ଲୁହବୋହିଲାପରି ପାଣି ବୋହୁଥାଏ । ଆର ଲୋକଟିର ନାମ 'ହାଲ୍' । ବୟସ କୋଡ଼ିଏ ଏକୋଇଶ ପାଖାପାଖି । ଅଣ୍ଟାରେ ଗୋଟାଏ ବେଲ୍‌ଟ ଭିଡ଼ିଥାଏ ସେ । ସେଥିରୁ ଝୁଲିଥାଏ ଗୋଟେ ଛୁରୀ, ଗୋଟେ ଲମ୍ବାଳିଆ ପିସ୍ତଲ୍ ଆଉ ସେଠି ଖଞ୍ଜାହୋଇଥାଏ ମେଞ୍ଚେ ହେବ କାର୍ତ୍ତୁଜ୍ । ବେଲ୍‌ଟରୁ ମନେହେଉଥାଏ ସତେ ଯେମିତି ଲୋକଜଣକ ନିଜକୁ ବେଶ୍ ଗୁରୁତ୍ୱପୂର୍ଣ୍ଣ ମନେ କରୁଛନ୍ତି । କିନ୍ତୁ ପ୍ରକୃତରେ ଏମିତି ବେଶଭୂଷାଯୋଗୁଁ ସେ ପିଲାଳିଆ ଦେଖାଯାଉଥିଲେ । ସ୍କାଗ୍‌ୱେର ବୁଢ଼ାବୁଢ଼ା ଲୋକେ ସେ ବାବୁ ଜଣକୁ ଦେଖି ହସୁଥିଲେ ମୁହଁରେ ହାତଦେଇ । ଫାଡ଼ାଭଳି ବେଶପଟା ହେଲେ କିଏ ନ ହସିବ ଯେ ?

ଏଇ ଭଳିଆ ଦୁଇ ଜଣ ଲୋକଙ୍କ ହାତରେ ବକ୍ ପଡ଼ିଲା ଶେଷକୁ ।



Digitized by srujanika@gmail.com

'ଚାର୍ଲସ' ଏବଂ 'ହାଲ୍' କୁକୁର ଦଳଟିକୁ କିଣିସାରି ନିଜ କ୍ୟାମ୍ପଆଡ଼େ ଚାଲିଲେ । କ୍ୟାମ୍ପରେ ସବୁ ଜିନିଷ ଅସଜଡ଼ା । ବକ୍‌କୁ ବଡ଼ ବିଚିତ୍ର ଲାଗିଲା । ତମ୍ବୁଟା ଅଣଦେଢ଼ ହୋଇ ଟଣା ହୋଇଚି । ବାସନ କୁସନ ଏକଡ଼ ସେକଡ଼ ପଡ଼ିଚି ଧୁଆଧୋଇ ନ ହୋଇ । ସବୁ ବିପର୍ଯ୍ୟସ୍ତ । ସେଠି 'ମର୍ସିଡିଶ୍'ବି ଉପସ୍ଥିତ ଥିଲେ । ସିଏ ହେଉଛନ୍ତି ଚାର୍ଲସଙ୍କର ସ୍ତ୍ରୀ ଏବଂ ହାଲ୍‌ଙ୍କର ଭଉଣୀ । ଚାର୍ଲସ୍ ଏବଂ ହାଲ୍‌ଙ୍କ ପରି ସେ ବି ସ୍ଲେଜ୍‌ଟଣା ବିଷୟରେ ଅନଭିଜ୍ଞ । ମାତ୍ର କିଛି ସାହାଯ୍ୟ ନ କରି ଉପଦେଶ ଦେବାରେ ଲାଗିଥାଆନ୍ତି ସେ । ଏମିତି ରଖ, ସେମିତି ବାନ୍ଧ, କହି ବକର ବକର ହଉଥାଆନ୍ତି ଅନବରତ ।

ଢେର୍ ସମୟଯାଏଁ ଧଇଁ ସଇଁ ହୋଇ ପୁରୁଷ ଦୁଇ ଜଣ ତମ୍ବୁଟାକୁ ଗୁଡ଼େଇ ତୁଡ଼େଇ ଗୋଟେ କିମ୍ଭୂତକିମାକାର ବିରାଟ ଗଣ୍ଠିଲିକରି ବାନ୍ଧିଲେ । ଟିଣ ବାସନକୁସନଯାକ ଧୁଆଧୋଇ ନ ହୋଇ ସେଇମିତି ସଜଡ଼ା ହେଲା । 'ମର୍ସିଡିଶ୍' କିନ୍ତୁ ନିଜ ଲୁଗାପଟା ପୁଟୁଳାଗୁଡ଼ାକ କେମିତି ବସିଲାବେଳେ ହାତପାଆନ୍ତାରେ ରହିବ, ସେଇ ଚିନ୍ତାରେ ଲାଗିଥାଆନ୍ତି । ସେଥିପାଇଁ ଏଠି ରଖ ସେଠି ରଖ ବାରମ୍ବାର ଜିନିଷପତ୍ର ସବୁ ଚଢ଼ା ଉତରା କରାଉଥାଆନ୍ତି ସେ ।

ଏମିତି ହଉ ହଉ କେତେବେଳେଯାଇ ଜିନିଷଯାକ ଲଦାହେଲା ସ୍ଲେଜ୍ ଗାଡ଼ିରେ ।

ଏମାନଙ୍କର ଏଇଭଳି ହରବର ହେଇ ଜିନିଷ ଲଦିବା କଥା ଲକ୍ଷ୍ୟ କରୁଥାଆନ୍ତି ପାଖ ତମ୍ବୁରେ ଥିବା ତିନି ଜଣ ଲୋକ । ସେମାନେ ହସାହସି ଠରାଠରି ହଉଥାଆନ୍ତି ଏମାନଙ୍କୁ ଦେଖି । ଶେଷକୁ ଜଣେ ପାଟି ଫିଟେଇ ବଡ଼ ପାଟିରେ କହିଲେ- ''ଭାଇ ଦେଖ । ମୁଁ ଅବଶ୍ୟ ତମ କାରବାରରେ ମୁଣ୍ଡ ଖେଳେଇବା କଥା ନୁହଁ । ମାତ୍ର ତୁମେମାନେ ସ୍ଲେଜ୍‌ଗାଡ଼ିରେ ତମ୍ବୁଟାକୁ ଯେମିତି ଲଦିଚ ମୁଁ ହେଇଥିଲେ ସେମିତି କେବେ କରି ନ ଥାନ୍ତି ।''

ଏକଥା ଶୁଣି ମର୍ସିଡିଶ୍ ବେଖାତିର କଲାଭଳି ଆଖି କୁଞ୍ଚେଇ ଚାହିଁଲେ ସେ ଲୋକ ଜଣକ ଆଡ଼କୁ ଏବଂ କହିଲେ ''ମତେ ସେ ତମ୍ବୁଟାକୁ ଯେମିତି ହେଲେ ନବାକୁ ପଡ଼ିବ । ତମ୍ବୁ ବିନା ଆମେ ଚଳିବୁ କେମିତି ? ତୁମର ପରାମର୍ଶ ଦବା ଦରକାର ନାହିଁ । ଆମ ତମ୍ବୁ ଆମେ ଯେମିତି ପାରୁ ସେମିତି ନେବୁ ।''

ଲୋକ ଜଣକ ପ୍ରତ୍ୟୁତ୍ତର କଲାଭଳି କହିଲେ- ''ଇଏତ ବସନ୍ତ ଋତୁ ହେଲାଣି । ଆଉ କୋଉ ଥଣ୍ଡା ସେମିତି ଅଛି ଯେ ତମ୍ବୁ ନିହାତି ଦରକାର ହବ ?''



Digitized by srujanika@gmail.com

କିନ୍ତୁ ମର୍ସିଡିଶ୍ ତାଙ୍କ କଥାକୁ କାନେଇଲେ ନାହିଁ ମୋଟେ । ଏତିକିବେଳେ ଚାର୍ଲସ ତମ୍ବୁଲଦା ସ୍ଲେଜଗାଡ଼ିରେ ଯୋଚା ହୋଇଥିବା କୁକୁରଙ୍କୁ ଚାବୁକ୍‌ରେ ପିଟି ଗାଡ଼ି ଚଳେଇବା ଆରମ୍ଭ କରିଦେଲେ । ଗାଡ଼ି ଚାଲୁ ଚାଲୁ ପାଖ ତମ୍ବୁର ଦ୍ୱିତୀୟ ଲୋକ ଜଣକ କହିଲେ- ‘‘ମୁଁ ଭାବୁଚି ଗାଡ଼ିଟା ଟିକିଏ ଟପାଳ ଅଛି । କୋଉଠି ହୁଏତ ଲେଉଟିଯାଇ ପାରେ ।’’

ଅଜଣା ଲୋକ ଜଣଙ୍କର ଏପରି ମନ୍ତବ୍ୟ ଶୁଣି ଚାର୍ଲସ କଟ୍‌ମଟ୍ କରି ଚାହିଁଲେ ତାଙ୍କୁ । ପୁଣି ଥରେ ଚାବୁକ୍ ଉଠାଇ ସେ କୁକୁରଙ୍କ ଉଦ୍ଦେଶ୍ୟରେ ଡାକ ଛାଡ଼ିଲେ- ମସ୍ ମସ୍ ! ହୁସ୍ ହୁସ୍ !!

ବକ୍ ସମେତ ଦଳର ସବୁ କୁକୁର ପ୍ରାଣପଣେ ଚେଷ୍ଟାକଲେ ଆଗକୁ ମାଡ଼ିଯିବାପାଇଁ । କିନ୍ତୁ ଏତେ ଅଧିକ ଜିନିଷ ଲଦା ହୋଇଥିଲା ଯେ ଗାଡ଼ିଟା ଇଞ୍ଚେ ବି ହଟିଲାନି ଆଗକୁ । ଟିକିଏ ରହିଯାଇ ପୁଣି ଥରେ ଆଣ୍ଠୁପକେଇ ଚେଷ୍ଟାକଲେ ସବୁ କୁକୁର । ଲଗାମ୍ ଡୋର୍ କଟ୍ କଟ୍ ଡାକୁଥାଏ । ମାତ୍ର ସବୁ ବୃଥା ।

ହାଲ୍ ଆଉ ସମ୍ଭାଳି ପାରିଲେନି । ହାରାମୀ ମଠୁଆ ଅଳସୁଆଗୁଡ଼ାକ ବୋଲି ପାଟିକରି ମାଡ଼ି ଆସିଲେ ଚାବୁକ୍ ଧରି । ଠିକ୍ ଏତିକିବେଳେ ‘ମର୍ସିଡିଶ୍’ ଚିତ୍କାରକରି ଦଉଡ଼ି ଆସିଲେ ଏବଂ ଏକ ପ୍ରକାର ଜୋର୍‌କରି ଚାବୁକ୍‌ଟାକୁ ଛଡ଼େଇନେଲେ ହାଲ୍‌ଙ୍କ ହାତରୁ ।

ନା । ମୁଁ ତୁମମାନଙ୍କୁ ଏ ବିଚରା ପ୍ରାଣୀଗୁଡ଼ାକୁ ଏମିତି ନୃଶଂସ ହୋଇ ପ୍ରହାର କରିବାକୁ ଦେବିନି । ତମେମାନେ ଏଠି ମତେ କଥା ଦିଅ ଯେ ବାଟଯାକ ଏମାନଙ୍କ ଦେହରେ ଟିପ ଦବନି, ନଚେତ୍ ମୁଁ ଏଇଠି ରହିଲି । କଥା ଦବ ନା ନାଇଁ ?

ଖିଙ୍କାରି ହୋଇ ଉଠିଲେ ହାଲ୍ ଭଉଣୀର କଥା ଶୁଣି । ‘‘ତୁ କୁକୁରମାନଙ୍କ ବିଷୟରେ ଛେନାଗୁଡ଼ଟା ଜାଣିଛୁ । କାମ ଉଠେଇବାକୁ ହେଲେ ଏଗୁଡ଼ାଙ୍କୁ ଚାବୁକ୍ ମାଡ଼ ଦରକାର । ସେଇଟା ହିଁ ଗୋଟିଏ ମାତ୍ର ବାଟ । ହେଇ, ଯେଉଁ ଲୋକମାନେ ସେ ତମ୍ବୁରେ ଅଛନ୍ତି, ପଚାର ଯାଇ ସେମାନଙ୍କୁ ।’’

କରୁଣ ଭାବରେ ଏଥର ଅନୁନୟ କଲାଭଳି ଅନ୍ୟ ତମ୍ବୁର ସେ ତିନି ଜଣ ଦେଖଣାହାରିଙ୍କ ଉଦ୍ଦେଶ୍ୟରେ ମୁହଁ ଉଠାଇ ମର୍ସିଡିଶ୍ କହିଲେ- ‘‘ସତରେ କ’ଣ କାମ ହାସଲପାଇଁ ସେମାନଙ୍କୁ ଏମିତି ମାଡ଼ମାରିବା ଦରକାର ? ଏମିତି ମାଡ଼ ଦେଖିଲେ ମୁଁ ସହି ପାରିବନି ମୋଟେ ।’’



Digitized by srujanika@gmail.com

ସେମାନଙ୍କ ଭିତରୁ ପ୍ରଥମେ ଯେଉଁ ଜଣକ ପରାମର୍ଶ ଦେଇଥିଲେ, ସେଇ ଭଦ୍ରବ୍ୟକ୍ତି ପାଖକୁ ଚାଲିଆସି କହିଲେ- ''ଦେଖ, ତମେ ପ୍ରକୃତରେ ଯଦି ଜାଣିବାକୁ ଚାହୁଁଚ, ତେବେ ମୁଁ କହିବି ଯେ ଏ କୁକୁରଗୁଡ଼ାକ ରୋଗରୁ ଉଠିଲାପରି ବଡ଼ ଦୁର୍ବଳ ହୋଇ ପଡ଼ିଚନ୍ତି। ଏମାନଙ୍କ ଦେହରେ ଜୀବନ ନାହିଁ, କିଛିଦିନ ଖାଇପିଇ ବିଶ୍ରାମ ନେଲେ ପୁଣି ଟାଗଡ଼ା ହୋଇଯିବେ। ମାତ୍ର ମୋର ଯାହା ବିଶ୍ୱାସ ତୁମେମାନେ ଏ କୁକୁର ଦଳଟିକୁ କିଣି ଠକେଇରେ ପଡ଼ିଯାଇଚ।''

ଠକେଇରେ ପଡ଼ିଯିବା କଥାର ସିଧାସଳଖ ଆକ୍ଷେପ ଶୁଣି 'ମର୍ସିଡିଶ୍'ଙ୍କୁ ଭଲ ଲାଗିଲାନି। ଯାହାହେଲେ ବି କିଣା ତ ସରିଚି। କ'ଣ ଆଉ କରାଯିବ ଏବେ। କିଛି ସମୟ ଚୁପ୍ ରହି ନିଜକୁ ବୁଝେଇଲେ ସେ। ଏବଂ ଚାବୁକ୍‌ଟିକୁ ବିନା ବାକ୍ୟବ୍ୟୟରେ ଫେରେଇଦେଲେ ଭାଇ ହାଲ୍‌ର ହାତକୁ। ''ତୋ ଇଚ୍ଛା ଯାହା ହଉଚି ତା' କର। ଯେମିତି ହେଲେ ଆମକୁ ଏଠୁ ଯିବାକୁ ପଡ଼ିବ। ଅତଏବ ମୁଁ ଆଉ ପାଟି ଫିଟେଇବିନି।'' ଦୀର୍ଘନିଶ୍ୱାସ ପକେଇ ସେ ଏତକ କହି ପାଖ ତମ୍ବୁର ତିନିଜଣ ଲୋକଙ୍କୁ କେମିତି ବେଖାତିର କରି ଚାହିଁଲେ।

ଏଥର ଗର୍ଜି ଉଠିଲା ହାଲ୍‌ଙ୍କର ଚାବୁକ୍। କୁକୁର ଦଳଟା ସାରା, ଛାଟିପିଟି ହୋଇ ନିଜର ସମସ୍ତ ବଳ ଖଟେଇ ଆଗକୁ ମାଡ଼ିଯିବାକୁ ଚେଷ୍ଟାକଲେ। ପାଦମାନ ପୋତି ହୋଇପଡୁଥାଏ ବରଫଗୁଣ୍ଡ ଭିତରେ। ତଥାପି ଗାଡ଼ି ହଟିବାକୁ ନାହିଁ। ପୁଣି ଥରେ ପଡ଼ିଲା ଚାବୁକ୍ ମାଡ଼। ପୁଣି ଆଉ ଥରେ। ହେଲେ ଗାତଖୋଳି ପୋତିଦେଲାପରି ସ୍ଲେଜ୍‌ଗାଡ଼ିଟା ଠାଣୁ ହୋଇ ରହିଲା ସେଠି।

ଏଇ ସମୟରେ ଦେଖଣାହାରି ତିନି ଜଣଙ୍କ ଭିତରୁ ସବୁଠାରୁ ବୟସ୍କ ଦିଶୁଥିବା ଭଦ୍ରବ୍ୟକ୍ତି ଜଣକ ରାଗ ତମ୍ ତମ୍ ହୋଇ ମାଡ଼ିଆସି କହିଲେ- ''ତୁମମାନଙ୍କର କ'ଣ କାମ ଅଛି କି ନ ଅଛି ମୋର ସେଥିରେ ଯାଏ ଆସେନା ଓ ତୁମେମାନେ କୋଉଠିକି ଯାଉଚ ମୋର ବି ସେ କଥା ଜାଣିବା ଲୋଡ଼ା ନାହିଁ। କିନ୍ତୁ ଏ କୁକୁରମାନଙ୍କ ସକାଶେ ମତେ ପଦେ କହିବାକୁ ପଡୁଛି। ସ୍ଲେଜ୍‌ଗାଡ଼ିର ଓଜନକୁ ଲାଘବ କରିବାପାଇଁ ତୁମେମାନେ ଦୁଇ ପଟର ଦଣ୍ଡାଧରି ଠେଲ ଏବଂ ଆଗପଟଟାକୁ ଝାଙ୍କିଦେଇ ଟିକେ ହାଲୁକା କରିଦିଅ। ତେବେ ଯାଇ କୁକୁରମାନଙ୍କୁ ଟାଣିବାରେ ସହଜ ହେବ। ନ ହେଲେ ଏଇମିତି ସେମାନେ  କଷ୍ଟ ପାଉଥିବେ ଏବଂ ଗାଡ଼ି ଟିପେ ବି ଆଗକୁ ଚଳୁ ନ ଥିବ।

'ଧନ୍ୟବାଦ' ବୋଲି ପଦେ କିଛି ନ କହି ହାଲ୍ ଏବଂ ଚାର୍ଲସ୍ ସେଇଭଳି ଚାଲୁରଖିଲେ ତାଙ୍କର କାମ। ପାଟିତୁଣ୍ଡ, ଚାବୁକ୍‌ମାଡ଼ର ବର୍ଷା ଭିତରେ ବକ୍‌ର ଦଳ



Digitized by srujanika@gmail.com

ଭିଡ଼ିବାକୁ ଲାଗିଲେ ସ୍ଲେଇ୍‌ଗାଡ଼ି । ଧୀରେ ଧୀରେ ଗାଡ଼ି ଆଗକୁ ଚାଲିଲା । ମୋଡ଼ ଡେଇଁଲେ ସ୍କାଗ୍‌ୱେର ପ୍ରଧାନ ରାସ୍ତା ପଡ଼ିବ । ପୁରୁଖା ଗାଡ଼ିଚାଳକ ହେଇଥିଲେ ହୁଏତ ମୋଡ଼ଣି ଜାଗାରେ ଏମିତି ବୋଝେଇ ଗାଡ଼ିକୁ ସତର୍କତାର ସହ ନେଇଯାଇ ପାରିଥାନ୍ତା, ହେଲେ ଚାର୍ଲସଙ୍କ ଦେଇ ସେ କଥା ସମ୍ଭବ ନ ଥିଲା । ହଠାତ୍ ଗାଡ଼ିଟା ସେଇଠି ମୋଡ଼ ବୁଲୁ ବୁଲୁ ଓଲଟି ପଡ଼ିଲା । ଜିନିଷପତ୍ର ସବୁ ବନ୍ଧା ହୋଇଥିଲା ଢିଲାହୋଇ । ଅତଏବ ଅଧାଅଧି ଜିନିଷ ବିଞ୍ଚାଡ଼ି ପଡ଼ିଲା ସେଇ ଜାଗାରେ ।

ମାତ୍ର କୁକୁରମାନେ ଅଟକିବାକୁ ନାରାଜ୍ । ଗାଡ଼ି ହାଲୁକା ହୋଇଗଲାଣି ।

ଏଥର ଡିଆଁମାରି ସେମାନେ ଆଗକୁ ଧାଇଁବାରେ ଲାଗିଲେ । ବକ୍ ସେତେବେଳକୁ ରାଗିଯାଇଥାଏ ଖୁବ୍ । ଏକ୍‌ରେ ଚାବୁକ୍‌ର ନିର୍ମମ ପ୍ରହାର । ସେଥିରେ ପୁଣି ବେହିସାବୀଙ୍କ ପରି ଜିନିଷ ଲଦା ହୋଇଚି । ତେଣୁ ସେ ବେଶୀ ବେଖାତିର୍ କରି ଦଉଡ଼ିବାକୁ ଲାଗିଲା । ପଛରେ ଧାଇଁଥାଆନ୍ତି ଅନ୍ୟମାନେ ଲଗାଲଗି ହୋଇ । ବାଟଯାକ ମର୍ସିଡିଶ୍‌ଙ୍କର ଲୁଗାପଟା, ବାସନକୁସନ ଏଣେତେଣେ ଖେଳେଇ ପଡୁଥାଏ ।

ପାଖ ସହରର ଲୋକେ ବଡ଼ ଦୟାଳୁ । ଗାଡ଼ିବାଲାଙ୍କର ଏପରି ଅବସ୍ଥା ଦେଖି ସେମାନେ ଆଗରେ ଜଗି ଅଟକେଇଲେ ସ୍ଲେଇ୍‌ଗାଡ଼ିକୁ । ଜିନିଷପତ୍ର ଗୋଟିଆଗୋଟି କରି ଆଣି ପହଞ୍ଚେଇଦେଲେ ଗୋଟିଏ ସ୍ଥାନରେ । କେମିତି ଲଦିଲେ ଗାଡ଼ି ଠିକ୍‌ରେ ଚାଲିପାରିବ ସେ ବିଷୟରେ ବି ପରାମର୍ଶ ଦେଲେ । ଅଧାଅଧି ଜିନିଷପତ୍ର କାଢ଼ି ଦିଆଗଲା । ତଥାପି ବୋଝ ଅଧିକ ହୋଇଯିବ ବୋଲି କେହି କେହି କହିଲେ । ତେଣୁ ଜିନିଷତକ ନବାପାଇଁ ଚାର୍ଲସ ଏବଂ ହାଲ୍ ଯାଇ ଆଉ ଛଅଗୋଟି ଅଧିକ କୁକୁର କିଣି ଆଣିଲେ । ନୂଆ କୁକୁର ଗୁଡ଼ାକ କିନ୍ତୁ ଉତ୍ତର ଅଞ୍ଚଳପାଇଁ ପୂରା ନୂଆ । ଘନ ବରଫ ଇଲାକାରେ ସ୍ଲେଇ୍‌ଗାଡ଼ି ଟାଣିଲାଭଳି ବଳ କି କୌଶଳ କିଛି ନ ଥିଲା ସେମାନଙ୍କ ପାଖରେ ।

ଅଥଚ ଚାର୍ଲସ, ହାଲ୍ କିମ୍ବା ମର୍ସିଡିଶ୍ ବୁଝୁ ନ ଥିଲେ ସେ କଥା । ସେମାନେ ଭାର୍ଜିନିଆର ଲୋକ ଏବଂ ଏସବୁ ବିଷୟରେ ଥିଲେ ପୂରାପୂରି ଅନଭିଜ୍ଞ । ଓଲଟି ଚଉଦଟା କୁକୁର ଯୋଚା ହୋଇଥିବା ସ୍ଲେଜଗାଡ଼ିର ମାଲିକ ବୋଲି ସେମାନେ ମନେ ମନେ ଗର୍ବ କରୁଥିଲେ । ସାଧାରଣତଃ ଏତେ କୁକୁରଙ୍କଦ୍ୱାରା ଟଣାହଉଥିବା ଗାଡ଼ି କୋଉଠି ବି ଦେଖିବାକୁ ମିଳେ ନାହିଁ । କିନ୍ତୁ କାହିଁକି ଦେଖିବାକୁ ମିଳେନି ସେ କଥା ବୁଝିବାକୁ ମୁଣ୍ଡ ନ ଥିଲା ସେମାନଙ୍କର । ଅସଲ କଥା ହେଲା, ଚଉଦଟା କୁକୁରଙ୍କପାଇଁ



Digitized by srujanika@gmail.com

ଗୋଟିଏ ଗାଡ଼ିରେ ଖାଦ୍ୟ ବୋଝେଇ କରି ଦୂରଯାତ୍ରାରେ ଯିବା ଅସମ୍ଭବ । ଏତେ ଖାଦ୍ୟ ମୋଟେ ଧରିବନି ଗୋଟିଏ ଗାଡ଼ିର ପରିସର ଭିତରେ ।

ଭାର୍ଜିନିଆର ଏଇ ଅନଭିଜ୍ଞ ଯାତ୍ରୀ ତିନି ଜଣ ଏଇମିତି ବେହିସାବୀ ଢଙ୍ଗରେ ଆରମ୍ଭକଲେ ସେମାନଙ୍କର ଯାତ୍ରା । ଆଗୁଆ କୁକୁର ହୋଇ ଯୋଚା ହୋଇଥାଏ ବକ୍ । କିଏ ଜାଣେ ପୁଣି କ'ଣ ଘଟିବ ଆଗକୁ ?

ମଣିଷଯାତ୍ରୀ ତିନି ଜଣ ବେଶ୍ ଖୁସିବାସିଆ ଜଣାପଡୁଥାଆନ୍ତି । କିନ୍ତୁ ଦଳର କୁକୁରଗୁଡ଼ାକ ସେମାନଙ୍କର ଠିକ୍ ଓଲଟା । ଲୁଣାପାଣି ଡାକସେବା କାମରେ ଖଟି ଖଟି ଥକି ପଡ଼ିଥାଆନ୍ତି ସେମାନେ । ଦେହ ଏବଂ ମନରେ ସେମାନେ କ୍ଲାନ୍ତି ଅନୁଭବ କରୁଥିଲେ ତୀବ୍ର ଭାବରେ ।

ଦିନ ଗଡ଼ିବା ସହିତ ବକ୍ ବୁଝିଗଲା ଯେ, ତା'ର ଏ ନୂଆ ମାଲିକମାନେ କୋଉ କୂଳର ନୁହନ୍ତି । ନା ସେମାନଙ୍କୁ ଗାଡ଼ି ଚଳେଇବା ଜଣାଅଛି, ନା ସେମାନେ ଯାତ୍ରାପଥରେ ଅନ୍ୟାନ୍ୟ ଆବଶ୍ୟକତା ସମ୍ପର୍କରେ ସଚେତନ ଅଛନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ତାଙ୍କର ଶିଖିବାର ମନୋବୃତ୍ତି ନ ଥିଲା ମୋଟେ । ପ୍ରତିଦିନର ଯାତ୍ରାପରେ ତମ୍ବୁ ଟାଣୁ ଟାଣୁ ରାତିଅଧ ହୋଇଯାଏ ଏବଂ ସେଇମିତି ସକାଳୁ ଉଠି ଗାଡ଼ିରେ ଜିନିଷ ଲଦୁଲଦୁ ବହକି ଯାଏ ଦିନ । ବାଟଯାକ ଚାଲିଥାଏ ସଜଡ଼ା ସଜଡ଼ି । କୋଉଠି ଢିଲା ହୋଇଗଲାଣି ତ କୋଉଠି ଅଣେଇ ହୋଇ ପଡ଼ିଲାଣି ଜିନିଷ ଗୋଟେ କଡ଼କୁ । ଏପରିକି ସାରାଦିନରେ ଥରେ ଥରେ ଦଶମାଇଲ୍ ବାଟ ବି ଅତିକ୍ରମ କରି ହୁଏନି ।

ଯାତ୍ରାରେ କେତେଦିନ ଲାଗିବ ଏବଂ କେତେଦିନର ଯାତ୍ରାପାଇଁ କେତେ ଖାଦ୍ୟ ଲୋଡ଼ାହେବ, ତା'ର ହିସାବ କରିଥିଲେ ହାଲ୍ । କିଛି ଦିନପରେ ଦେଖାଗଲା ଯେ ସେମାନଙ୍କର ଖାଇବା ଜିନିଷ ଖୁବ୍ ଶୀଘ୍ର ସରିସରି ଆସୁଛି । କୁକୁରମାନଙ୍କପାଇଁ ଖାଦ୍ୟ ବି କମିଆସିଲାଣି ଢେର୍ । ତୁନ୍ଦ୍ରା ଅଞ୍ଚଳ । ଚଉଦିଗରେ ବରଫ ଆଉ ବରଫ । ପରବର୍ତ୍ତୀ ସହରରେ ପହଞ୍ଚିଲା ଯାଏ ଆଉକିଛି ମିଳିବନି କୋଉଠି । କ'ଣ କରାଯିବ ଏବେ ? ଗୋଟିଏ ମାତ୍ର ବାଟ ବାକିଥିଲା ସେତେବେଳକୁ । କୁକୁରମାନଙ୍କର ଦୈନିକ ଖାଦ୍ୟର ଅଧା କମେଇଦବାକୁ ପଡ଼ିବ । ସମସ୍ତେ ଜାଣନ୍ତି ଉତ୍ତରପଟର ହସ୍କି-କୁକୁରଙ୍କ ଅପେକ୍ଷା, ଅନ୍ୟଆଡୁ ଆମଦାନୀ ହେଉଥିବା କୁକୁରଗୁଡ଼ାକ ବେଶୀ ଖାଆନ୍ତି । କିନ୍ତୁ ହାଲ୍ କିଛି ନ ବୁଝି ନ ଶୁଣି ସମସ୍ତଙ୍କର ଖାଦ୍ୟ କମେଇ ଦେଲେ । ତେଣୁ ଏଣିକି ସ୍କାଗ୍‌ୱେରେ କିଣା ହୋଇଥିବା ଛଅଟାଯାକ ନୂଆ କୁକୁର ଖାଡ଼ା ଉପବାସରେ ରହିଲେ ବୋଲି କହିଲେ



Digitized by srujanika@gmail.com

ଚଳେ । ସବୁ କୁକୁରଙ୍କ ପେଟରେ କ୍ଷୁଧାର ଯନ୍ତ୍ରଣା । ପାଦ ଏକଡ଼ ସେକଡ଼ ପଡୁଥାଏ । କିନ୍ତୁ ବକ୍, ତା'ର କର୍ତ୍ତବ୍ୟରେ ହେଳା କରୁ ନ ଥାଏ ମୋଟେ ।

କୁକୁରମାନଙ୍କଠାରୁ ମଣିଷମାନଙ୍କ ଅବସ୍ଥା ବି ଆହୁରି ଶୋଚନୀୟ ହୋଇପଡ଼ିଲା । ପହିଲେ ପହିଲେ କୁକୁର ଦଳର ଅବସ୍ଥା ଦେଖି ବିଚଳିତ ହୋଇପଡୁଥିଲେ ମର୍ସିଡିଶ୍ । ତେଣୁ ଲୁଚେଇ ଲୁଚେଇ କେବେ କେମିତି ଖଣ୍ଡେ ଅଧେ ମାଛ ଆଣି ଫିଙ୍ଗି ଦେଉଥିଲେ ସେମାନଙ୍କ ମୁହଁ ପାଖକୁ । ଏଣିକି ତାଙ୍କ ଅବସ୍ଥା ତାଙ୍କୁ ବଳେଇଲା । ସିଏ, ତାଙ୍କ ସ୍ୱାମୀ ଓ ଭାଇ ତିନିହେଁ ମିଶି କେବଳ ପରସ୍ପର ଭିତରେ ଝଗଡ଼ା କରିବାକୁ ଲାଗିଲେ । ପ୍ରତି ମୁହୂର୍ତ୍ତରେ କଳି । ପରସ୍ପର, ପରସ୍ପରକୁ ଗଲ୍ତି ଖୋଜି ଏ କାମଟା ହୋଇନି, ସେ କାମଟା ହେବାର ଥିଲା ବୋଲି ନାନା କଥା ଉଠାଇ ଦୋଷାରୋପ କରିବାକୁ ଲାଗିଲେ । ଏମିତି ଲାଗୁ ଲାଗୁ କଥାଯାଇ ବଂଶର ଗୋଇ ଖୋଳାଖୋଳିରେ ଉଠେ । ହଜାର ହଜାର ମାଇଲ୍ ଦୂରରେ ଥିବା ଆତ୍ମୀୟସ୍ୱଜନ, ଏପରିକି କୋଉକାଳୁ ସ୍ୱର୍ଗବାସ କରିଥିବା ବନ୍ଧୁବାନ୍ଧବଙ୍କ କଥା ପଡ଼ି ଉଲୁଗୁଣାମାନ ଦିଆଦେଇ ହୁଏ । କେବେ କେମିତି ସମକାଳୀନ କଳା, ସଂସ୍କୃତି ଓ ରାଜନୀତିକୁ ନେଇ ମତଭେଦ ଯେ ନ ହୁଏ, ଏପରି ନୁହେଁ ।

ଏମିତି କଳିତକରାଳରେ ବେଳଯାଏ । କାମ କରିବାକୁ ତର ଅଛି କାହାକୁ ? ଅଯଥାରେ ଦୁର୍ମୂଲ୍ୟ ସମୟ, ରାଗରୁଷାର ଫାନ୍ଦ ଭିତରେ କୁଆଡ଼େ ଚାଲିଯାଏ ସମସ୍ତଙ୍କ ଅଜାଣତରେ ।

ମର୍ସିଡିଶ୍ ଲକ୍ଷ୍ୟକଲେ ତାଙ୍କପ୍ରତି ଚାର୍ଲସ ଏବଂ ହାଲ ଏଣିକି ବଡ଼ ରୁକ୍ଷ ହେଇପଡୁଛନ୍ତି । ବ୍ୟବହାର ସେମାନଙ୍କର ଅସହ୍ୟ ହେଇପଡୁଚି ବେଳକୁବେଳ । ଜୀବନ ସାରା ଖୁବ୍ ନରମଭାବରେ ସେ ଚଳିଆସିଚନ୍ତି । ଭାର୍ଜିନିଆରେ ସ୍ତ୍ରୀମାନଙ୍କୁ ପୁରୁଷମାନେ ଖୁବ୍ ସମ୍ମାନ କରନ୍ତି । ସେଠା ପରମ୍ପରା ଅନୁସାରେ ସ୍ତ୍ରୀର ସମସ୍ତ ଦେଖାରଖା ପୁରୁଷର ନୈତିକ କର୍ତ୍ତବ୍ୟ । ତେଣୁ ବର୍ତ୍ତମାନର ଟାଆଁସା କଥାବାର୍ତ୍ତା ଭୀଷଣ ଭାବରେ ବାଧୁଥିଲା ତାଙ୍କୁ । ଏବେ ବେଶ୍ ଦୁର୍ବଳ ଅନୁଭବ କରୁଥିଲେ ମର୍ସିଡିଶ୍ । ଅତଏବ ସେ ଜିଦ୍ ଧରିଲେ ସେ ଯେହେତୁ ଆଉ ଚାଲିପାରୁ ନାହାନ୍ତି, ତାଙ୍କୁ ସ୍ଲେଜ୍‌ଗାଡ଼ି ଉପରେ ହିଁ ବସିକରି ଯିବାକୁ ପଡ଼ିବ । ହାଲ୍ ଓ ଚାର୍ଲସ ବହୁତ ବୁଝେଇବାକୁ ଚେଷ୍ଟାକଲେ । ମର୍ସିଡିଶ୍‌ଙ୍କର ଓଜନ ଅତି କମ୍‌ରେ ଷାଠିଏ କିଲୋଗ୍ରାମ ହେବ । ସ୍ଲେଜ୍‌ଗାଡ଼ିରେ ଯେତିକି ଜିନିଷ ଆଗରୁ ଲଦାହେଇଚି ସେତିକ ଭିଡ଼ିବା କୁକୁରମାନଙ୍କପାଇଁ କାଠିକର ପାଠ । ସେଥିରେ ପୁଣି ମର୍ସିଡିଶ୍ ବସିଲେ ଯାହାହବ ତାହା ସହଜରେ ଅନୁମେୟ । ହଜାର



Digitized by srujanika@gmail.com

ପାଟିତୁଣ୍ଡ କଥା କଟାକଟି ପରେ ମର୍ସିଡିଶ୍‌ହିଁ ଜିଣିଲେ । ଗୋଡ଼ ଲମ୍ବେଇ ସେ ବସିଗଲେ ସ୍ଲେଜ୍‌ଗାଡ଼ିରେ ।

କେତୋଟି ଦିନ ବଡ଼ କଷ୍ଟରେ ବିତିଗଲା । ଶେଷକୁ ଏମିତି ଗୋଟେ ସମୟ ଆସିଲା ଯେତେବେଳେ କୁକୁରମାନେ ଆଉ ପାଦେ ଆଗକୁ ଆଗେଇ ପାରିଲେନି । ଗାଡ଼ି ଠିଆହୋଇ ରହିଲା ଗୋଟିଏ ସ୍ଥାନରେ । ଓହ୍ଲେଇ ପଡ଼ିବାପାଇଁ ବହୁତ ଅନୁରୋଧ କରାଗଲା ମର୍ସିଡିଶ୍‌ଙ୍କୁ । ଭାଇ ଓ ସ୍ୱାମୀ କେତେ ଅନୁନୟ କରି ବୁଝେଇଲେ । କିନ୍ତୁ ମର୍ସିଡିଶ୍ ବଡ଼ ଚିଡ଼ା ଆଉ ଜିଦି ପ୍ରକୃତିର ସ୍ତ୍ରୀଲୋକ । ସେ ଚଳିଲେ ନାହିଁ ମୋଟେ । ଅତଏବ ଚାର୍ଲସ ଏବଂ ହାଲ୍ ରାଗିଯାଇ ଶୂନ୍ୟେ ଶୂନ୍ୟେ ଟେକି ଆଣିଲେ ତାଙ୍କୁ ଏବଂ ଆଣି କଚାଡ଼ିଦେଲେ ତଳେ ।

ଛୋଟଛୁଆପରି ଗୋଡ଼ କଚାଡ଼ି ମର୍ସିଡିଶ୍ ସେଇଠି ସେମିତି ବସିରହି ଉଃ! ଆଃ! ହେଲେ । ମିଛରେ କନ୍ଦାକଟା କଲେ । ଅଥଚ ଠିଆହୋଇ ଅନ୍ୟମାନଙ୍କ ସହ ବାଟ ଚାଲିବାକୁ ମୋଟେ ମନ କଲେନି । ସ୍ଲେଜ୍‌ଗାଡ଼ି ସହ ଅନ୍ୟମାନେ ଆଗେଇ ଗଲେ ମଧ୍ୟ ସେ ପୂର୍ବଭଳି ବସି ରହିଲେ ସେଇଠି । ଚାର୍ଲସ ଏବଂ ହାଲ୍ ଆଗେଇ ଗଲେ । ମନେମନେ ସେମାନେ ମର୍ସିଡିଶ୍‌ଙ୍କ ଉପରେ ରକ୍ତ ଚାଉଳ ଚୋବାଉ ଥାଆନ୍ତି । ଏଇମିତି ପ୍ରାୟ ତିନି ମାଇଲ୍ ଆଗେଇଗଲା ପରେ ସେମାନେ ବାଧ୍ୟହେଲେ ପଛକୁ ଫେରିବାପାଇଁ । ଫେରି ଆସି ସେମାନେ ଦେଖିଲେ, ଯେଉଁ ସ୍ଥାନରେ ମର୍ସିଡିଶ୍ ପୂର୍ବରୁ ବସିଥିଲେ ସେଇଠି ବସିଚନ୍ତି ସେମିତି, ଖୁମାଣି ହେଇ ।

ଯେଉଁଭଳି ଟେକି କଚାଡ଼ିଥିଲେ ଠିକ୍ ସେଇ କାର୍ଯ୍ୟର ପୁନରାବୃତ୍ତି କରି ଏଥର ତାଙ୍କୁ ସେମାନେ ଟେକିନେଇ ପୁଣି ଥୋଇଲେ ସ୍ଲେଜ୍‌ଗାଡ଼ିରେ । ପୂର୍ବଭଳି କୁଛେଇ କୁଛେଇ ଆଗକୁ ଚାଲିଲା ଗାଡ଼ି ।

ଏହିଦିନ ରାତିରେ ହିଁ କୁକୁରମାନଙ୍କର ଖାଦ୍ୟ ପୂରାପୂରି ସରିଗଲା ।

ବକ୍‌ର ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼ିଥାଏ । ପେଟରେ ଦାନା ନାହିଁ । କେତେ ସହିବ ସେ ଆଉ ! ଅନ୍ୟମାନଙ୍କ ଅବସ୍ଥା ବି ତଦ୍ରୂପ । ତଥାପି ଯେତେପାରେ ସେତେ ସେ ଚେଷ୍ଟା କଲା ଟାଣିବାପାଇଁ । ବେଳେବେଳେ ଅବଶ ହୋଇପଡୁଥାଏ ସେ । ପାଦ ରହିଗଲା ମାତ୍ରେ ପୁଣି ବସୁଥାଏ ଠେଙ୍ଗୁଣି କିମ୍ବା ଚାବୁକ୍ ପାହାର । ପ୍ରାଣ ବିକଳରେ ଉଠିପଡ଼ି ପୁଣି ଚେଷ୍ଟା କରୁଥାଏ ଆଗକୁ ଯିବାକୁ । କ୍ଳାନ୍ତିରେ ଝାପ୍‌ସା ହେଇ ଆସୁଥାଏ ଆଖି ।



Digitized by srujanika@gmail.com

ଏଡ଼େ ସୁନ୍ଦର ସୁଠାମ ଦେହ ତାର୍ ଧେଡ଼ିଆ ହେଇଗଲଣି । ରୁମର ରଙ୍ଗ ପାଲଟିଗଲାଣି ନୁଖୁରା ଏବଂ ଫାକୁଟିଆ । ମେଞ୍ଚା ମେଞ୍ଚା ହେଇ ଠାଆକୁ ଠାଆ ଓହଳି ପଡ଼ିଲାଣି । ହାଲ୍‌ଙ୍କର ଠେଙ୍ଗୁଣିମାଡ଼ ବସି ବସି ଯେଉଁ ଜାଗାମାନଙ୍କରେ ରକ୍ତ ଝରିଥିଲା, ସେସବୁ ଥାନରେ ଜଟ ବାନ୍ଧିହେଇ ଆସିଲାଣି । ପାଦ ସବୁବେଳେ ଟଳମଟଳ । ଧୂଡୁଧୂଡୁ ପତଳା ଦେହରେ ଗଣି ହେଇଯାଉଚି ପଞ୍ଜରା ହାଡ଼ । ସାରା କୁକୁରଦଳଟା ଦିଶୁଥିଲେ କଙ୍କାଳସାର । ମାଂସଟିକେ ନାଇଁ କୋଉଠି କାହା ଦେହରେ ।

ଜଣକ ପରେ ଜଣେ କୁକୁରଙ୍କ ଭିତରୁ ପଡ଼ିଯାଉଥାନ୍ତି ଅଚେତ୍ ହୋଇ । କେହି କେହି ଯନ୍ତ୍ରଣାରେ ପଡ଼ି ଛଟପଟ ହେବାକୁ ଲାଗିଲେ । ହାଲ୍ ଜାଣିଗଲେ ଯେ ଏଥିରୁ କେତୁଟା ଆଉ ଉଠିପାରିବେନି ବୋଧେ । ଅତଏବ ଯନ୍ତ୍ରଣାରୁ ମୁକ୍ତିଦେବାପାଇଁ ସେ ସେଇଠି ତିନୋଟି କୁକୁରଙ୍କର ଜୀବନଦୀପ ଲିଭେଇ ଦେଲେ ।

ଏଇଭଳି ଜଣକ ପରେ ଜଣେ ଚାଲିଯିବାପରେ ଆଉ କେବଳ ରହିଲେ ବକ୍ ଏବଂ ତା'ର ଚାରିଜଣ ସାଥି । ଯାହା ଟିକେ ବି ଜୀବନ ସେମାନଙ୍କ ଦେହରେ ଥିଲା ସେଇଥିରେ ସେମାନେ ଚେଷ୍ଟାକରୁଥିଲେ ସ୍ଲେଜ୍‌ଗାଡ଼ିଟିକୁ ଆଗକୁ ନେଇଯିବାପାଇଁ ।

ଧୀର ମନ୍ଥର ଗତିରେ ସେମାନେ ଏଥର ଆସି ପହଞ୍ଚିଲେ ଶ୍ୱେତନଦୀର ଧାରରେ । ସେଇଠି ଜଣେ କେହି ଯାତ୍ରୀ ଏକଲା ତମ୍ବୁଟିଏ ପକେଇ ରହିଥିବାର ଦେଖିଲେ ସେମାନେ ।

ବସନ୍ତ ଋତୁ ଆସିଗଲାଣି । ଗଛମାନଙ୍କ ଉପରେ ଜମି ରହିଥିବା ବରଫ ତରଳିବାକୁ ଆରମ୍ଭ କଲାଣି ଧୀରେ ଧୀରେ । ଚାରିଆଡ଼େ ବରଫର ଚଟାଣ ଧସିବାକୁ ଆରମ୍ଭ କଲାଣି । ସାରା ପୃଥିବୀ ସତେ ଯେମିତି କଡ଼ ଲେଉଟୋଉଚି ଅନେକ ଦିନର ଶୀତନିଦରୁ ତନ୍ଦ୍ରା ତୁଟେଇ ।

ହଠାତ୍ ଗୋଟିଏ ଜାଗାରେ ସେଇ ଶ୍ୱେତନଦୀର ଧାରରେ ଅଟକି ଗଲା ଗାଡ଼ି । ଅଟକିବା ମାତେହିଁ କୁକୁରମାନେ ଶୋଇ ରହିଲେ ସେଠି ମଲାଙ୍କ ଭଳି । ମର୍ସିଡିଶ୍ ଧକେଇ ଧକେଇ କାନ୍ଦିବା ଆରମ୍ଭ କରିଦେଇ ଥାଆନ୍ତି । ଚାର୍ଲସ୍ ଏବଂ ହାଲ୍ କ୍ଳାନ୍ତି ଏବଂ ଅବସନ୍ନତାରେ ଭାଙ୍ଗି ପଡୁଥାନ୍ତି ବଡ଼ ଅସହାୟଭାବରେ ।

ସେଠି ପୂର୍ବରୁ ତମ୍ବୁ ପକେଇ ରହିଥିବା ଯାତ୍ରୀ ଜଣକ କିଛିଦିନ ହେବ ଅଟକି ରହିଥାନ୍ତି ବୋଧେ । ଏମାନେ ଗାଡ଼ିସହ ଅଟକିଥିଲେ ଠିକ୍ ତାଙ୍କରି ତମ୍ବୁ ପାଖରେ । ସେ ଖଣ୍ଡେ କାଠଗଡ଼ ଉପରେ ବସି ଗୋଟିଏ କୁରାଢ଼ିର ବେଣ୍ଟ ତିଆରି କରୁଥାଆନ୍ତି ।



Digitized by srujanika@gmail.com



କ୍ଷୁଧାରେ ଡହଳ ବିକଳ ଜୀବନ



Digitized by srujanika@gmail.com

କିଛି ସମୟ ମୂର୍ଚ୍ଛାଭଳି ପଡ଼ି ରହିବା ପରେ ମୁଣ୍ଡ ଉଠେଇ ସେଇ ଅଜଣାଲୋକ ଜଣଙ୍କୁ ଚାହିଁଲା ବକ୍ । ତାଙ୍କର ବେଣ୍ଟ ତିଆରି କାମ ସରିଆସିଥାଏ ସେତେବେଳକୁ ।

ଏଇ ଅଜଣାବ୍ୟକ୍ତି ଜଣକ ଥିଲେ ଜନ୍ ଥର୍ଣ୍ଣଟନ୍ ।

ଆଗନ୍ତୁକଦଳଟିର ହାଲ୍ ହରକତ୍ ଦେଖି ସେମାନଙ୍କର ଅବସ୍ଥା ଠଉରେଇ ନେଲେ ସେ । ତୁନ୍ଦ୍ରା ଅଞ୍ଚଳରେ ଏଭଳି ବେହିସାବୀ ହୋଇ ଯାତ୍ରାକଲେ ପରିସ୍ଥିତି କିଭଳି ଭୟଙ୍କର ହୁଏ ସେକଥା ତାଙ୍କୁ ବେଶ୍ ଜଣା । ଅତଏବ ଚାର୍ଲସ, ହାଲ୍ ଏବଂ ମର୍ସିଡିଶ୍‌ଙ୍କୁ ଭଲକରି ଦୁଇପଦ ସେ ଶୁଣେଇ ଦେଲେ ।

ହାଲ୍ ଯେତେବେଳେ ତାଙ୍କୁ ଆଗକୁ ବରଫ କିପରି ଅଛି ଏବଂ ତା' ଉପରେ ଯାତ୍ରା ନିରାପଦ କି ନୁହେଁ ବୋଲି ପ୍ରଶ୍ନକଲେ, ଥର୍ଣ୍ଣଟନ୍ ଗୋଟିଏ ପଦରେ କହିଲେ- 'ଖୁବ୍ ଖରାପ୍' ।

ଥର୍ଣ୍ଣଟନ୍ ଜାଣିଥିଲେ ଏ ଅନଭିଜ୍ଞ ଅବିମୃଶ୍ୟକାରୀ ଲୋକଗୁଡ଼ାକ ତାଙ୍କ ପରାମର୍ଶ ମୋଟେ ମାନିବେନି । ଏବଂ ସତକୁସତ ସେଇଆ ହିଁ ହେଲା ।

ହାଲ୍, ଥର୍ଣ୍ଣଟନ୍‌ଙ୍କ ମନ୍ତବ୍ୟ ଶୁଣି ଛିଗୁଲେଇବାପରି ଟିକେ ହସିଲେ ଏବଂ ଟିପ୍ପଣୀ କଲେ - ''ଯା...ମ, ମୁଁ ଏଇକଥା ଦୁଇ ଦିନ ଆଗରୁ ଶୁଣି ଶୁଣି ଆସିଲିଣି ଯେ ରାସ୍ତା ନିହାତି ବାଜେ । ବରଫ ଧସିବାଯୋଗୁଁ ଭୂଇଁ ଖସୁଚି । ଏଇଟା ତଳି ଖସିବା ସମୟ । ଏପରିକି ଜଣେ କହିଥିଲେ ଆମେ କୁଆଡ଼େ ଶ୍ୱେତନଦୀଯାଏ ପହଞ୍ଚି ପାରିବୁନି । ମାତ୍ର ଦେଖ ଆମେ ଆସି ଏଠି ହାଜର ହେଇଗଲୁ ନା ନାଇଁ !'' ଏତକ କହି ସେ ଛାତିଫୁଲେଇ ଠିଆହେଲେ ସେଠି ।

''ସେଇ ଲୋକମାନେ ତୁମକୁ ଠିକଣା କଥା କହିଥିଲେ'' - ଉତ୍ତର ଦେଲେ ଥର୍ଣ୍ଣଟନ୍ । ''ବରଫତଳ ଏଣିକି ଯେ କୌଣସି ସମୟରେ ଖସିବାକୁ ଆରମ୍ଭ କରିପାରେ । ତୁମର ଭାଗ୍ୟଭଲ କେମିତି ଏଯାଏଁ ସୁରୁଖୁରୁରେ ଆସି ପହଞ୍ଚିଯାଇଛ । ହେଲେ ଆଉ ଆଗକୁ ଗଲେ ବିପଦ । ସାରା ଆଲାସ୍କାର ସୁନାତକ ମତେ ଦେଲେ ବି ବର୍ତ୍ତମାନ ମୁଁ ଶ୍ୱେତନଦୀ ଉପରେ ବରଫ ଚଟାଣ ଦେଇ ଆଗକୁ କେବେ ଯିବିନି । ମୋ କଥା ମାନ । ଏଇଲେ ବରଫ ତଳିଛାଡ଼ିବା ଆରମ୍ଭ କରିଛି । ଯଦି ଯିବ, ସେଇଠି ପତଳା ଚଟାଣ ଫାଟି ହୁଏତ ତୁମର ପ୍ରାଣହାନି ହୋଇପାରେ । ତେଣୁ ଏଇଠି ରହିଯାଅ ।'' ହେଲେ, ହାଲ୍ ମୋଟେ କିଛି ନ ଶୁଣି କଡ଼ାସ୍ୱରରେ କହିଲେ,''ତୁମର ଆମ ବିଷୟରେ ମୁଣ୍ଡ ଖେଳେଇବା ମୋଟେ ଦରକାର ନାହିଁ । ଅନେକଙ୍କ ଭଳି ଆମେ



Digitized by srujanika@gmail.com

ପାରୁଡ଼ାପୋକ ନୁହଁ । ଏବେ ବି ଅନେକ ସାହସ ମହଜୁଦ୍ ଅଛି ଆମ ଭିତରେ । ମତେ ଲାଗୁଚି ତୁମେ ବରଫ ଖସୁଚି କି ନାହିଁ ଜାଣିବା ପୂର୍ବରୁ ଆମେ ବୋଧେ ଡସନ୍‌ରେ ପହଞ୍ଚିଯାଇଥିବୁ ।'' ଏତିକି କହି ଚାବୁକ୍ ନଚେଇ ନଚେଇ ସେ ଚାଲିଲେ ସ୍ଲେଜ୍‌ଗାଡ଼ି ପାଖକୁ ଏବଂ ପାଟିକଲେ - ''ହେ ବକ୍ ! ହାରାମୀ ଅଳସୁଆ । ଉଠ୍ । ମସ୍ ମସ୍ ।''

ମାତ୍ର ଆଉ ଗାଡ଼ି ଟାଣିବାକୁ ଶକ୍ତି ନ ଥିଲା କୁକୁରଦଳର କାହା ପାଖରେ । ସଭିଏଁ ଅଧାମରା ଦିଶୁଥାଆନ୍ତି । ହାଲ୍ କିନ୍ତୁ ମାନିବା ଲୋକ ନୁହନ୍ତି । ସାଇଁ ସାଇଁ କରି ସେ ବସେଇ ଦେଇଗଲେ ପାହାରମାନ ବିଚରା ନିରୀହ କୁକୁରଗୁଡ଼ାଙ୍କ ଉପରେ । ଏ କଥା ଦେଖି ରାଗରେ ଓଠ ଚାପି ଥର୍ଣ୍ଣଟନ୍ ହାଲ୍‌ଙ୍କଆଡ଼କୁ ଚାହିଁଲେ ମାତ୍ର ପାଟି ଫିଟେଇ କିଛି କହିଲେ ନାଇଁ । ମାଡ଼ ଦାଉରେ ପ୍ରାଣପଣେ ଚେଷ୍ଟାକରି ସୋଲେକ୍‌ସ୍ ପହିଲେ ଠିଆହେଇ ପଡ଼ିଲା । 'ଜୋ' ଦୁଇ ଥର ଆଣ୍ଠୁପକେଇ ଚେଷ୍ଟାକଲାପରେ ତୃତୀୟ ଥରକୁ ଥରି ଥରି ଉଠିଲା । ଅଥଚ 'ବକ୍' ମୋଟେ ଚେଷ୍ଟା କଲାନି । ଯେମିତି ପଡ଼ିଥିଲା ସେଇମିତି ପଡ଼ିରହିଲା ସେ । ଚାବୁକ୍ ପାହାର ଥରକୁ ଥର ପଡୁଥାଏ । ଦେହ ଫାଟି ରକ୍ତ ବୋହୁଥାଏ । ତଥାପି ବକ୍, ନା ପ୍ରତିବାଦ କଲା ନା ଚେଷ୍ଟକଲା ଠିଆହେବାପାଇଁ । ଥର୍ଣ୍ଣଟନ୍ କହିବେ କହିବେ ହଉଥାନ୍ତି କିନ୍ତୁ ପୁଣି ପରମୁହୂର୍ତ୍ତରେ କ'ଣ ବିଚାରକରି ଚୁପ୍ ରହିଯାଉଥାଆନ୍ତି ।

ଦଳ ଭିତରେ ବକ୍ ସବୁଠାରୁ ଅଧିକ କାମିକା କୁକୁର । ମାତ୍ର ଯାତ୍ରା ଆରମ୍ଭ ହେବାଦିନୁ ସେ ଥକିପଡ଼ି ନାହିଁ କୋଉଠି ଥରେ ବି । ତେଣୁ ହାଲ୍‌ଙ୍କର ଧାରଣା ହେଲା ଯେ ବକ୍ ଥଙ୍ଗା ଗାଳୁଚି । ସେଥିରେ ପୁଣି ଗୋଟେ ଅଜଣା ଲୋକ ସେଠି ବସି ରହି ତାମସା ଦେଖୁଚି । ରକ୍ତ ଚହଟି ଗଲା ତାଙ୍କ ମୁଣ୍ଡକୁ । ସେ ଆଉ ସମ୍ଭାଳି ପାରିଲେନି । ଚାବୁକ୍‌ଟାକୁ ଫୋପାଡ଼ି ଦେଇ ସେ ଗୋଟେ ଠେଙ୍ଗୁଣି ଗୋଟେଇ ଆଣିଲେ ଏବଂ ବକ୍‌କୁ ଅତି ନିର୍ମମ ଭାବରେ ପ୍ରହାର କରିବା ଆରମ୍ଭ କରିଦେଲେ ।

ବକ୍ ଇଚ୍ଛା କରିଥିଲେ ହୁଏତ ଚେଷ୍ଟାକରି ଠିଆହେଇ ପାରିଥାନ୍ତା । ମାତ୍ର ନା' ସେ ଠିଆ ହେବନି । ଥରେ ମନ ଭିତରେ କୌଣସି ଅନୁଭବ ହେଲେ, ସେ କଥା ବିରୁଦ୍ଧରେ ସେ କେବେ କୌଣସି କାମ କରେ ନାହିଁ । 'ବକ୍'ର ଅନୁଭବର ଜ୍ଞାନ ଥିଲା ଅଦ୍ଭୁତ । ତା' ଭିତରୁ କିଏ ଯେମିତି ବାରମ୍ବାର କହୁଥିଲା ''ହୁସିଆର୍ ! ଆଗକୁ ବିପଦ ଅଛି । ପାଦ ଆଗକୁ ବଢ଼ିଲାମାନେ ମୃତ୍ୟୁ ସୁନିଶ୍ଚିତ ।'' ଦିନ ସାରା ଦଉଡ଼ି ଦଉଡ଼ି ଗାଡ଼ି ଟାଣିଲାବେଳେ ସେ ଲକ୍ଷ୍ୟକରିଚି - ବରଫ ଖଚ ଖଚ ଶୁଭୁଚି । ତଳି ଛାଡ଼ି



Digitized by srujanika@gmail.com

ଆସୁଚି ନିଷ୍ଠେ ଚଟାଣର । ଆଗକୁ ଶ୍ୱେତନଦୀର ବିସ୍ତୀର୍ଣ୍ଣ ବରଫ-ଶଯ୍ୟା । କିଏ ଜାଣେ ଆଗକୁ ଯାଉ ଯାଉ ଗଳିପଡ଼ି, ଜୀବନ ନ ଯିବ ବୋଲି ?

ଅତଏବ ବାରମ୍ବାର ପାହାର ସତ୍ତ୍ୱେ ଦେହକୁ ପଥର କରି ସେ ପଡ଼ି ରହିଲା ସେଇଠି ।

ବକ୍‌ର ଜୀବନ ଯାଉଥାଏ କି ଆସୁଥାଏ । ଦେହସାରା ମାଡ଼ର ଚିହ୍ନ । ଆସନ୍ନ ମୃତ୍ୟୁ ଏବଂ ଯନ୍ତ୍ରଣା ତା' ଦେହରେ ଏତେ ଗଭୀର ରେଖାପାତ କରିଥାନ୍ତି ଯେ, ହାଲ୍‌ଙ୍କର ଠେଙ୍ଗୁଣି ପାହାର ଆଉ ବେଶୀ ଯନ୍ତ୍ରଣାଦାୟକ ବୋଲି ତା'ର ମନେ ହେଉ ନ ଥିଲା । ପ୍ରତିଥରର ଠେଙ୍ଗୁଣି ମାଡ଼ ତା'କୁ ଆହୁରି ଅଧିକରୁ ଅଧିକ ପଥର କରି ଦେଉଥିଲା । ଯନ୍ତ୍ରଣାର ଶେଷସୀମା ଡେଇଁ ଯାଇଥିଲା ସେ । କଷ୍ଟ ଅନୁଭବ କରାଉଥିବା ସ୍ନାୟୁଗ୍ରନ୍ଥି ଗୁଡ଼ିକ ତା' ଦେହରେ ନିର୍ଜୀବ ପାଲଟି ଯାଇଥିଲେ । ଜୀବନ ଯେମିତି ଲିଭିଲିଭି ଆସୁଥିଲା । ଆଖିର ପତା ଦୁଇଟି ମୁଦିହୋଇ ଆସୁଥିଲେ ମୃତ୍ୟୁର ଆଗୁଆ ସଙ୍କେତ ପରି ।

ହଠାତ କୋଉଠୁ କେଜାଣି ଗୋଟାଏ ବିରାଟ ଚିତ୍କାରରେ ଥରିଗଲା ଖଣ୍ଡମଣ୍ଡଳ । ଗୋଟାଏ ହିଂସ୍ର ପଶୁ ଯେମିତି ମାଡ଼ି ଆସିଲା ବିନା ଘୋଷଣାରେ । ପଶୁଭଳି ଚିତ୍କାର କରି ମାଡ଼ି ଆସିଥିଲେ ଜନ୍ ଥର୍ଣ୍ଣଟନ୍ । ହାଲ୍‌ଙ୍କର ନିର୍ମମ ବ୍ୟବହାର ଅସହ୍ୟ ମନେ ହୋଇଥିଲା ତାଙ୍କୁ । ଆଉ ନିଜକୁ ସଂଯତ କରିପାରିଲେନି ସେ । ଚରମ କ୍ରୋଧରେ ଜର୍ଜରିତ ହୋଇ ସେ ଗୋଟିଏ ମୁଥରେ ହାଲ୍‌ଙ୍କୁ ଭୂତଳଶାୟୀ କରିଦେଲେ । ଏବଂ ବକ୍‌ର ନିଶ୍ଚଳ ଶରୀର ଉପରେ ଗୋଡ଼ ଫର୍କଟେଇ ଠିଆ ହେବା ସହିତ ଧମକ୍ ଦେଇ କହିଲେ - ''ଆଉ ଥରେ ଏ କୁକୁର ଉପରକୁ ଠେଙ୍ଗୁଣି ଉଠେଇଲେ ମୁଁ ତୁମକୁ ପଶୁପରି ହତ୍ୟା କରିବି । ଖବରଦାର୍ ।''

ହାଲ୍, ଅଣ୍ଡାଳି ଅଣ୍ଡାଳି ଉଠି , ଓଠ ପାଖରୁ ରକ୍ତ ପୋଛୁ ପୋଛୁ କହିଲେ - ''ସେଟା ମୋ କୁକୁର । ମୁଁ ତା'କୁ ମାରିଲି କି ହାଣିଲି ତୁମେ ସେଥିରେ ପାଟି ଫିଟେଇବାକୁ କିଏ ? କହି ଦଉଚି - ମୋ ସାମ୍ନାରୁ ହଟିଯାଅ ! ନ ହେଲେ ପରିସ୍ଥିତି ଭଲ ହବନି । ମୁଁ ଏଇ ଗାଡ଼ି ସହ ଡସନ୍ ଯାଉଛି ଏବଂ ଅଲବତ୍ ଯିବି । ଯଦି ଭଲ ଦଶା ଅଛି, ମୋ କୁକୁର ମୋ ମାର୍ଫତରେ ଛାଡ଼ିଦିଅ ।''

କିନ୍ତୁ ଆଖି ଲାଲ୍ ଲାଲ୍ କରି ଥର୍ଣ୍ଣଟନ୍ ଖୁଣ୍ଟଭଳି ଠିଆହେଇ ରହିଲେ ସେଠି । ନାକରୁ ତାଙ୍କର ଫଁ ଫଁ ହୋଇ ଖରନିଃଶ୍ୱାସ ବାହାରୁଥାଏ ।



Digitized by srujanika@gmail.com

ଏତିକିବେଳେ ମର୍ସିଡିଶ୍ ଚିତ୍କାର କରିଉଠିଲେ । କାରଣ ହାଲ୍ କ୍ରୋଧରେ ଅନ୍ଧ ହୋଇ ତାଙ୍କର ଶିକାର ଛୁରୀଟିକୁ ହାତରେ ଧରି ମାଡ଼ି ଆସିଲେ ଥର୍ଣ୍ଣଟନ୍ଙ୍କ ଆଡ଼କୁ । ଥର୍ଣ୍ଣଟନ୍ ବେଶ୍ କୁଶଳୀ ପୁରୁଷ । ସେ ଟିକିଏ ଘୁଞ୍ଚିଯାଇ କୁରାଢ଼ି ବେଣ୍ଟରେ ହାଲ୍ଙ୍କର କଚଟି ଉପରେ ଦେଲେ ଏକ ଶକ୍ତ ପାହାର । ସେଇ ପାହାରକରେ ଖସି ପଡ଼ିଲା ଏତେ ବଡ଼ ଛୁରୀଟା । ପୁଣି ଥରେ ଦ୍ୱିତୀୟ ବାର ସେ ଦେଲେ ଆଉ ଏକ ପାହାର । ହାତ ଛଟ୍ ଛଟ୍ କରି ଛିଞ୍ଚାଡ଼ି ପଡ଼ିଲେ ହାଲ୍ । ଏଇ ସୁଯୋଗରେ ଥର୍ଣ୍ଣଟନ୍ ଛୁରୀଟାକୁ ତଳୁ ଗୋଟାଇ ବକ୍‌ର ବେକ ଏବଂ ଛାତିରେ ବନ୍ଧାହୋଇଥିବା ଲଗାମ୍ ଫିତାସବୁ କାଟି ପକେଇଲେ ।

ଆଉ ଲଢ଼େଇ କରିବାକୁ ସାହସ ନ ଥାଏ ହାଲ୍ କିମ୍ବା ଚାର୍ଲସଙ୍କ ପାଖରେ । ଏମିତିରେ ବି ଯାତ୍ରାର ପ୍ରତିକୂଳ ପରିସ୍ଥିତିଯୋଗୁଁ ସେମାନେ ବେଶ୍ ଦୁର୍ବଳ ହୋଇପଡ଼ିଥିଲେ । ହାଲ୍ ମନେ ମନେ ଭାବିଲେ ଯେମିତି ହେଲେ ବି 'ବକ୍'ର ଅବସ୍ଥା ଯାହା, ସେଥିରେ ସେ ଏଇକ୍ଷଣି କି ଆଉ ଟିକିଏ ପରେ ମରିବ । ତା' ପାଇଁ ଅଯଥା କନ୍ଦଳ କରି କି ଲାଭ ?

ଅତଏବ ଥର୍ଣ୍ଣଟନ୍ଙ୍କ ପାଖରେ ଦରମରା ବକ୍‌କୁ ଛାଡ଼ି ସେ ଚାଲିଯିବେ ବୋଲି ସ୍ଥିର କଲେ । ନୀରବରେ ଛୁରୀ, ଚାବୁକ୍ ଓ ଠେଙ୍ଗୁଣି ଆଦି ସବୁ ଉଠେଇ ସେ ସ୍ଲେଜ୍‌ଗାଡ଼ିରେ ରଖିଲେ ଏବଂ ବାକି ଚାରିଗୋଟି କୁକୁରଙ୍କ ସହାୟତାରେ ଯାତ୍ରାପାଇଁ ଯୋଜନା ଆରମ୍ଭ କଲେ ।

କେତେ ସମୟ ପରେ ସେମାନେ ପ୍ରସ୍ତୁତ ହୋଇଗଲେ । ଆଗରେ ବିସ୍ତୀର୍ଣ୍ଣ ପ୍ରାନ୍ତର । ଶ୍ୱେତନଦୀର ଶଯ୍ୟା ବରଫ ଭିତରେ ଶୋଇପଡ଼ିଚି କୋଉ ଅତଳରେ । ଜଣେ କୁକୁରମାନଙ୍କୁ ଅଡ଼େଇଲାବେଳେ ଆଉ ଜଣେ ଗାଡ଼ିର ପଛ ମଝିଦଣ୍ଡା ଧରି ଠେଲିଲା । ମର୍ସିଡିଶ୍ ବସିଥାନ୍ତି ଗାଡ଼ିର ଠିକ୍ ମଝିରେ ।

ଖୁବ୍ କ୍ଷୀଣ ଭାବରେ ବକ୍ ଜାଣିପାରୁଥିଲା ଯେ ତା'ର ଦଳ ତାକୁ ଛାଡ଼ି ଚାଲିଯାଉଛନ୍ତି । ବହୁ କଷ୍ଟରେ ସେ ମୁଣ୍ଡ ଉଠେଇ ଦେଖିବାକୁ ଚେଷ୍ଟା କଲା । ବରଡ଼ାପତ୍ର ପରି ଥରୁଥାଏ ତା'ର ଦେହ । ଗୋଟିଏ କଡ଼ର ଆଖିକୁ ବହୁ କଷ୍ଟରେ ଫିଟାଇ ଝାପ୍‌ସା ଭାବରେ ସେ ଦେଖିଲା, ଗାଡ଼ିର ସବା ଆଗରେ ଯୋଚା ହେଇଚି 'ପାଇକ୍' । 'ସୋଲେକ୍‌ସ' ରହିଛି ପୂର୍ବ ପଛରେ । ମଝିରେ ଆଗପଛହୋଇ ଅଛନ୍ତି, 'ଜୋ' ଏବଂ 'ଟିକ୍' । ସମସ୍ତେ ଘୁଷୁରିଲା ପରି ଚେଷ୍ଟା କରୁଥିଲେ ଆଗକୁ ଯିବାପାଇଁ ।



Digitized by srujanika@gmail.com

'ବକ୍'  ସେଇ ଅଧାମେଲା ଆଖିରେ ପୁଣି ଦେଖିଲା, ଥର୍ଣ୍ଣଟନ୍ ତା' ପାଖରେ ଆଣ୍ଠେଇ ପଡ଼ିଚନ୍ତି । ତାଙ୍କ ହାଡୁଆ ହାତର ପରଶ ସେ ଅନୁଭବ କରୁଥିଲା ସାରା ଶରୀରରେ । ସେ ବୋଧେ ଠଉରୋଉଥିଲେ କୋଉଠି କିଛି ହାଡ଼ ଭାଙ୍ଗିଚି ନା ନାଇଁ ! ଖୁବ୍ ଧୀରେ ଏବଂ ହୁସିଆର ହେଇ ଥର୍ଣ୍ଣଟନ୍ 'ବକ୍'ର ଦେହକୁ ଯାଞ୍ଚ କରୁଥିଲେ । ବକ୍‌ର ସାରାଦେହରେ ଖଣ୍ଡିଆ ଖାବରା ଦାଗ । ଚରମ କ୍ଷୁଧା ଯୋଗୁଁ ତା'ର ଏ ମୁମୂର୍ଷୁ ଅବସ୍ଥା ।

ଥର୍ଣ୍ଣଟନ୍ ଜାଣିପାରିଲେ ଯେ କୁକୁରଟିର ସେବା ଶୁଶ୍ରୂଷା କଲେ ସେ ହୁଏତ ବଞ୍ଚିଯାଇପାରେ । ସେତେବେଳକୁ ସ୍ଲେଜ୍‌ଗାଡ଼ି ଧରି ଆସିଥିବା ଆଗନ୍ତୁକମାନେ ଶ୍ୱେତନଦୀର ବରଫ ଶେଯ ଉପରକୁ ଉଠିସାରିଥିଲେ । ଉଭୟ ବକ୍ ଏବଂ ଥର୍ଣ୍ଣଟନ୍ ଦେଖିଲେ ଗାଡ଼ିଟା ଧୀରେ ଧୀରେ ମାଡ଼ିଚାଲିଚି ଆଗକୁ । କୁକୁରମାନଙ୍କୁ ତାଗିଦ୍ କରିବା ପାଇଁ ପୁରୁଷ ଦୁଇ ଜଣ ପାଟି କରୁଥାନ୍ତି ରହି ରହି । ଆଗରେ ଟିକିଏ ଉଠାଣି ପଡ଼ିଲା । ଏଥର ପାଟିଟା ଟିକିଏ ବେଶୀ ଶୁଣାଗଲା । ବକ୍ ଦେଖିଲା ଗାଡ଼ିଟା ବରଫକୁଦ ଡେଇଁ ଆରପଟକୁ ଖସି ଯାଉଚି । ସତେଯେମିତି ପୋଖରୀ ହୁଡ଼ା ଡେଇଁ ଖସିଯାଉଛି ପୋଖରୀ ଭିତରକୁ । କିନ୍ତୁ ହଠାତ୍ କ'ଣ ଗୋଟାଏ ଅଘଟଣ ଯେମିତି ଘଟିଗଲା । ଗାଡ଼ିର ପଛଦଣ୍ଡାଟା ଉଠିଯାଇ ଛାଟି ହୋଇଗଲେ ହାଲ୍ । ତଥାପି ସେ ଧରିଥାଆନ୍ତି ଦଣ୍ଡାକୁ । ମର୍ସିଡିଶ୍‌ଙ୍କର କାନଫଟା ଚିତ୍କାର ଥରେ ଦୁଇ ଧର ଶୁଭି ପୁଣି କୁଆଡ଼େ ନୀରବ ହୋଇଗଲା । ଥର୍ଣ୍ଣଟନ୍ ଓ ବକ୍ ଦେଖିଲେ ଚାର୍ଲସ ହାମୁଡ଼ି ହୋଇ ଉଠି.ଆସୁଚନ୍ତି ଉପରକୁ । ମାତ୍ର ସେତିକିବେଳେ ବରଫର ଏକ ବିରାଟ ଚକଡ଼ା ଖସିଯାଇ ଗୋଟାଏ ଗାଡ଼ି ସୃଷ୍ଟି ହେଇଗଲା ସେଠି । ସମସ୍ତେ ତା' ଭିତରେ କୁଆଡ଼େ ନିଶ୍ଚିହ୍ନ ହୋଇଗଲେ । କୁକୁର କି ମଣିଷ କାହାର ପତ୍ତା ରହିଲାନି କୋଉଠି । କେବଳ ବିରାଟ ଗାଡ଼ଟାଏ ବାରି ହେଉଥାଏ ଦୂରରୁ ।

ଏତେବେଳକେ 'ବକ୍' ବୁଝିଲା - ବରଫ ତଳି ଛାଡ଼ିବା କହିଲେ ପ୍ରକୃତରେ କ'ଣ ବୁଝାଏ ! ବରଫ ଖସିବା ଆରମ୍ଭ କଲେ ସ୍ଲେଜ୍‌ଗାଡ଼ିର ବାଟପାଇଁ କ'ଣ ଅସୁବିଧା ସୃଷ୍ଟିକରେ ସେ କଥା ଚିନ୍ତା କରିବା ଦରକାର ପଡ଼ିଲାନି ।

କେତେ ସମୟ ପରେ ଥର୍ଣ୍ଣଟନ୍ ଓ ବକ୍ ପରସ୍ପରକୁ ଚାହିଁଲେ । ଥର୍ଣ୍ଣଟନ୍ କ'ଣ ବୁଝିଲେ କେଜାଣି ତା'ର ମୁଣ୍ଡର ଦୁଇ ପାଖକୁ ଗେଲରେ ଧରି ପକେଇ କହିଲେ - 'ଶାଳା ହାରାମୀ'! ପ୍ରତିବଦଳରେ ତାଙ୍କର ହାଡୁଆ ହାତକୁ ବକ୍ ଚାଟିଦେଲା ଥରେ ।



Digitized by srujanika@gmail.com

କିଛି ଦିନ ପୂର୍ବେ ଜନ୍ ଥର୍ଣ୍ଣଟନ୍‌ଙ୍କର ଗୋଡ଼ରେ ବରଫ- ଘା' ହୋଇଥିଲା । ଘା' ଏତେ ଗୁରୁତର ହେଲାଯେ ସେ ସେଇଠାରେ କିଛିଦିନ ବିଶ୍ରାମ ନେବାପାଇଁ ମନସ୍ଥ କରି ଏକୁଟିଆ ଡେରା ଭିଡ଼ି ରହିଲେ । ସାଙ୍ଗରେ ଥାଆନ୍ତି ଦୁଇଟି କୁକୁର । ବକ୍ ସହ ପରିଚୟ ହେଲାବେଳକୁ ତାଙ୍କ ନିଜ ଗୋଡ଼ ତଥାପି ଭଲ ହୋଇ ନ ଥାଏ ।

ଧୀରେ ଧୀରେ ବସନ୍ତ ଋତୁ ଗାଢ଼ହେଲା । ବରଫ ତରଳିବାକୁ ଲାଗିଲା । ଶ୍ୱେତନଦୀର ଧାର ଅନାବୃତ ହୋଇ କୁଳୁକୁଳୁ ରାବରେ ବହିବାକୁ ଲାଗିଲା । ଥୁଣ୍ଟା ଗଛମାନେ ବରଫ ଗଦା ଭିତରୁ ମୁହଁ ଟେକି ଆକାଶକୁ ଚାହିଁଲେ । ପତ୍ର, ଫୁଲ ଲଦି ହୋଇଗଲେ ଗଛମାନଙ୍କରେ ।

ଏଣିକି କ୍ଳାନ୍ତି ମେଣ୍ଟାଇ ନିଜକୁ ସାକ୍ଷମ କରୁଥିବା ମିଷ୍ଟର ଥର୍ଣ୍ଣଟନ୍ ଏବଂ ବକ୍ ଉଭୟେ ଅନେକ ସମୟରେ ଏକାଠି ନଦୀକୂଳେ ବସି ବହିଯାଉଥିବା ଚକ୍ ଚକ୍ ପାଣିକୁ ଚାହାଁନ୍ତି । ଗଛରେ ବସି କିଚିରି ମିଚିରି କରୁଥିବା ପକ୍ଷୀମାନଙ୍କର ରାବ ଶୁଣନ୍ତି । ପରସ୍ପର ନୀରବରେ ପ୍ରକୃତିକୁ ଉପଭୋଗ କରନ୍ତି ।

ଗୋଡ଼ ଖରାପଯୋଗୁଁ ତାଙ୍କୁ ସେଠାରେ ବିଶ୍ରାମପାଇଁ ଛାଡ଼ିଯାଇଥିବା ସାଙ୍ଗମାନେ ଡସନ୍‌ରୁ ଯେ କୌଣସି ମୁହୂର୍ତ୍ତରେ ଫେରିପାରନ୍ତି ବୋଲି ଆଶାକରୁଥିଲେ ଥର୍ଣ୍ଣଟନ୍ ।

ବକ୍ ଭାବୁଥାଏ, ଯା' ହଉ ପ୍ରାୟ ତିନି ହଜାର କିଲୋମିଟର ଆସିବାପରେ ତାକୁ ଟିକିଏ ବିଶ୍ରାମ ମିଳିଲା । ଆସ୍ତେ ଆସ୍ତେ ତା' ଦେହର ଖଣ୍ଡିଆ ଖାବରା ଘା' ମାନ ଭଲ ହୋଇଆସିଲା । ଗୁଡ଼ାଏ ଦିନ ବିଶ୍ରାମ କରିବା ଫଳରେ ପୂର୍ବର ବଳ ଓ ଓଜନ ଫେରି ପାଇଲା ସେ । ଆଗଭଳି ଶରୀର ତା'ର ଗହଳ ଲୋମରେ ଭରିଯାଇ ଚିକ୍ ଚିକ୍ ଦେଖାଗଲା ।

ପୂର୍ବରୁ ଥର୍ଣ୍ଣଟନ୍‌ଙ୍କ ପାଖରେ ଯେଉଁ ଦୁଇଟି କୁକୁର ଥିଲେ, ସେମାନଙ୍କ ଭିତରୁ ଜଣକର ନାଁ 'ସ୍କିଟ୍' ଓ ଆଉ ଜଣକର ନାଁ 'ନିଗ୍' । ଦୁହେଁ ପରସ୍ପରର ଭାରୀ ଅନ୍ତରଙ୍ଗ । 'ସ୍କିଟ୍' ଦେଖିବାକୁ ଛୋଟ । ତା'ର ମୂଳ ବଂଶଧରମାନେ 'ଆଇରିସ୍' ବାସିନ୍ଦା । 'ସ୍କିଟ୍' ଭିତରେ ଟିକେ ବଇଦଗୁଣ ଥାଏ । ସବୁ ପ୍ରାଣୀଙ୍କ ଭିତରେ ଏଇଭଳି କେତେକ ଅଛନ୍ତି, ଯେଉଁମାନେ ସହଜରେ ଅନ୍ୟର ପୀଡ଼ା ଜାଣିପାରନ୍ତି । ସେଥିପାଇଁ ଅନ୍ୟର ସେବା ଶୁଶ୍ରୁଷା କରିବାକୁ ଆଗେଇ ଆସନ୍ତି ସେମାନେ । 'ସ୍କିଟ୍' ଭିତରେ ସେ ଗୁଣଟି ଥିଲା ବେଶ୍ ପ୍ରାଞ୍ଜଳ । ତେଣୁ 'ବକ୍' ବାଧିକିରେ ପଡ଼ିଥିଲାବେଳେ ସେ ତା'ର ଘା'ଗୁଡ଼ିକୁ ଚାଟିଚୁଟି ପରିଷ୍କାର କରିଦେଉଥିଲା । ସେତେବେଳେ ବକ୍ ଦେହରେ ଯଦି ପ୍ରକୃତରେ ବଳ ଥାଆନ୍ତା ତେବେ ସେ ମେଞ୍ଚଡ଼ 'ସ୍କିଟ୍'କୁ ପାଖରେ ପୂରେଇ ଦେଇ ନ ଥାନ୍ତା



Digitized by srujanika@gmail.com

କେବେ । ମାତ୍ର ପରେ ପରେ ତାକୁ ସେସବୁ ବେଶ୍ ସୁଖକର ମନେହେଲା । ଓଲଟି ସକାଳେ ସଂଜେ ସ୍କିଟ୍ ତା' ପାଖକୁ ନ ଆସିଲେ ଆଉ ତା'କୁ ସୁଖ ଲାଗିଲା ନାହିଁ ।

'ନିଗ୍' କିନ୍ତୁ ଦେଖିବାକୁ ବେଶ୍ ବଡ଼ । ଦେହର ରଙ୍ଗ ଗାଢ଼ କଳା । ତା'ର ପୂର୍ବପୁରୁଷମାନେ ଥିଲେ ବେଶ୍ ଦୁର୍ଦ୍ଧର୍ଷ ଜାତିର କୁକୁର । 'ନିଗ୍' କୁ ଦେଖିଲେ ଜଣାପଡ଼େ ତା' ରକ୍ତରେ ଯେମିତି ଶିକାରୀ ମନୋଭାବ ସବୁବେଳେ ପ୍ରବାହିତ ହେଉଛି ।

ସ୍କିଟ୍ ଏବଂ ନିଗ୍‌ଙ୍କର ଏତେ ଅଳ୍ପ ଦିନ ଭିତରେ ଏତେ ଗାଢ଼ ବନ୍ଧୁତା ଦେଖି ଆଶ୍ଚର୍ଯ୍ୟ ହେଉଥିଲା ବକ୍ । ଆହୁରି ଆଶ୍ଚର୍ଯ୍ୟ ଲାଗୁଥିଲା ତାକୁ ଯେ ଥର୍ଣ୍ଣଟନ୍‌ଙ୍କର ତା'ନିଜ ପ୍ରତି ଏତେ ସ୍ନେହମମତାକୁ ସେମାନେ ଇର୍ଷ୍ୟା ଦୃଷ୍ଟିରେ ଦେଖୁନାହାନ୍ତି । ଥର୍ଣ୍ଣଟନ୍ ଜଣେ ବେଶ୍ ଉଦାର ମଣିଷ । ତାଙ୍କର ଏଇ ଉଦାରପଣିଆ ବୋଧେ ତାଙ୍କ କୁକୁରମାନଙ୍କ ଭିତରକୁ ପ୍ରସାରିତ ହୋଇଛି । ଥର୍ଣ୍ଣଟନ୍ କୁକୁରମାନଙ୍କୁ ନିଜର ପିଲାଭଳି ମନେ କରୁଥିଲେ । ସେମାନଙ୍କ ସହିତ ଡିଆଁକୁଦା କରିବା, ମିଛିମିଛିକିଆ ମାଡ଼ଗୋଳ କରିବାରେ ସେ ଖୁବ୍ ଆନନ୍ଦ ଲାଭ କରୁଥିଲେ ।

ଅତି ଅଳ୍ପଦିନ ଭିତରେ ବକ୍ ମଧ୍ୟ ଥର୍ଣ୍ଣଟନ୍‌ଙ୍କୁ ଗଭୀର ଭାବରେ ଭଲପାଇବାକୁ ଲାଗିଲା ।

ଏବେ ଏବେ ବକ୍‌ର ବିଚାରପତି ମିଷ୍ଟର୍ ମିଲର୍‌ଙ୍କ କଥା ବେଶ୍ ମନେପଡ଼େ । ମିଲର୍ ଥିଲେ ଜଣେ ଗମ୍ଭୀର ଏବଂ ଅଭିଜାତ ମଣିଷ । ବକ୍ ସହିତ ସେ ଏମିତି ଏତେ ଗୋଳେଇପୋଳେଇ ହୁଅନ୍ତିନି । ତଥାପି ତା'କୁ ଖୁବ୍ ଭଲ ଲାଗୁଥିଲା ମିଲ୍‌ରଙ୍କର ସମ୍ଭ୍ରାନ୍ତ ଆଚରଣ । ଆଜିକାଲି କିନ୍ତୁ ବକ୍ ଏକ ନୂଆ ଶିହରଣ ଅନୁଭବ କରୁଛି । ଥର୍ଣ୍ଣଟନ୍‌ଙ୍କ ଟାଆଁସା ଆଶ୍ଳେଷ ଏବଂ ଘୋଷଡ଼ା ଘୋଷଡ଼ି, ତା' ଭିତରେ ଭରିଦଉଚି ଏକପ୍ରକାରର ଅବ୍ୟକ୍ତ ଆନନ୍ଦ । ବକ୍‌ର ମନେ ହୁଏ, ସେ ବୋଧେ ସାରାଜୀବନ ଏଇଭଳି ଜଣେ ମାଲିକପାଇଁ ଅପେକ୍ଷା କରି ରହିଥିଲା । ଅନେକ ଦୁଃଖ କଷ୍ଟପରେ ଆଜି ସେ ତା'ର ଈପ୍‌ସିତ ମଣିଷଟିକୁ ପାଇଛି । ତେଣୁ ଶ୍ରଦ୍ଧା ଏବଂ ସମ୍ମାନରେ ସେ ଥର୍ଣ୍ଣଟନ୍‌ଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇପଡୁଥିଲା ବେଳକୁବେଳ ।

ଥର୍ଣ୍ଣଟନ୍ ବି ଭଲ ପାଇବାର ବାଗ ଜାଣନ୍ତି । ବକ୍‌କୁ ଦେଖିଲେ ସେ ମିଛରେ ରାଗିଲାଭଳି ଦୁଇ ହାତରେ କାନମୂଳ ସହିତ ତା'ର ମୁଣ୍ଡକୁ ଜାବୁଡ଼ି ଧରନ୍ତି । ତା'ପରେ ମୁଣ୍ଡକୁ ଆଗପଛ ଝୁଲା ଝୁଲେଇଲା ଭଳି କରି କରନ୍ତି - 'ଶାଳା ହାରାମୀ'! 'ବଦମାସ୍ କୋଉଠିକାର !' ମିଠା ଆଶ୍ଳେଷ ଭଳି ସେସବୁ କଥା ବକ୍ ପିଇଯାଏ ଏଡ଼େ ଏଡ଼େ ଆଖି କରି । ତାକୁ ଲାଗେ ଏତେ ଖୁସିରେ ହୁଏତ ତା' ଛାତି ଫାଟିଯିବ ।



Digitized by srujanika@gmail.com

ଏଣିକି ଥର୍ଣ୍ଣଟନ୍‌ଙ୍କ ପାଖେ ପାଖେ ସେ ଛାଇପରି ଘୂରି ବୁଲୁଥାଏ ସବୁବେଳେ । ଏମିତି କିଛିଦିନ ଗଡ଼ିଯିବାପରେ ଥର୍ଣ୍ଣଟନ୍‌କୁ ବିଶ୍ରାମପାଇଁ ଛାଡ଼ିଯାଇଥିବା ଦୁଇ ଜଣ ସାଥୀ ସେ ସ୍ଥାନକୁ ଫେରିଲେ । ସେମାନଙ୍କର ନାମ 'ହାନ୍‌ସ' ଏବଂ 'ପେଟେ' । ବକ୍ କିନ୍ତୁ ସେମାନଙ୍କୁ ଆଡ଼ ଆଖିରେ ବି ଚାହିଁଲାନି ଟିକେ । ଯେତେବେଳେ ଜାଣିଲା ଯେ ଏମାନେ ତା'ର ମାଲିକଙ୍କର ବେଶ୍ ପୁରୁଣା ବନ୍ଧୁ, ସେ ଉପରଠାଉରିଆ ଭାବେ ଗ୍ରହଣ କରିନେଲା ସେମାନଙ୍କୁ । ସେ ଲୋକମାନେ ମଧ୍ୟ ବକ୍‌ର ମତିଗତି ବୁଝିପାରି ତା' ସାଙ୍ଗରେ ସେମିତି ଲଗାଲଗି କଲେନି । 'ସ୍କିଟ୍' ଆଉ 'ନିଗ୍' କିନ୍ତୁ ସମସ୍ତଙ୍କ ସହ ସବୁବେଳେ ମାତିଥାଆନ୍ତି ଖେଳକୁଦରେ । କେତେବେଳେ କାହା ଶେଯ ତଳେ ଗଳିଲେଣି ତ ଆଉ କେତେବେଳେ କାହା ପଛରେ ଦଉଡ଼ିଲେଣି । ସେମାନଙ୍କର ମନ ସବୁବେଳେ ହାତ ଆପୁଡ଼ା ଖାଇ ଗେଲେଇ ହଉଥିବେ । ଥର୍ଣ୍ଣଟନ୍ ବି ଅଦ୍ଭୁତ । ସେମାନଙ୍କ ମନଜାଣି ଗେଲକରନ୍ତି ଅନେକ ।

ମାତ୍ର ବକ୍‌କୁ ଏସବୁ ଭଲ ଲାଗେନା । ଗେଲପାଇଁ ଏତେ ଗୁଡ଼େ ନାଳେଇ ପାଳେଇ ହବା କ'ଣ ଭଲ ?

ତା'ର ଇଚ୍ଛା ଥର୍ଣ୍ଣଟନ୍‌ଙ୍କ ପାଖରେ ନୀରବରେ ବସି ଖାଲି ତାଙ୍କୁ ଚାହିଁ ରହନ୍ତା । ମୁହଁର ଅକୁହା କଥାମାନ ପଢ଼ନ୍ତା ତାଙ୍କ ଆଖିକୁ ଚାହିଁ । ବକ୍‌ର ନିର୍ନିମେଷ ଚାହାଣି ଖୁବ୍ ଆକୃଷ୍ଟ କରେ ଥର୍ଣ୍ଣଟନ୍‌ଙ୍କୁ । ସେ ବି ମନ୍ତ୍ର-ମୁଗ୍ଧ ହେଲାଭଳି ତା'କୁ ଚାହିଁ ରହନ୍ତି । ମନେହୁଏ ଉଭୟେ ଉଭୟଙ୍କ ପ୍ରତି କୋଉଯୁଗର ପୁରୁଣା ବନ୍ଧୁଭଳି ବେଶ୍ ଆକର୍ଷିତ ।

ଅଥଚ ଦିନେ ଦିନେ ରାତିରେ ଥର୍ଣ୍ଣଟନ୍‌ଙ୍କ ଗୋଡ଼ ପାଖରେ ଶୋଇ ଜଳୁଥିବା ନିଆଁର ଲହଲହ ଶିଖାକୁ ଅନେଇଲେ ବକ୍‌ର ପୂର୍ବପୁରୁଷଙ୍କ ସ୍ମୃତି ମନେପଡ଼େ । ନିଆଁର ବଳୟ ଭିତରେ ଗଧିଆବଂଶର ବଣ-କୁକୁର ମୁହଁ ତା'କୁ ଜଳଜଳ ଦିଶେ । ସେ ମୁହଁ ଯେମିତି ଆକାଶକୁ ଚାହିଁ ଆଦିମ ଡାକର ସ୍ୱର ଲମ୍ୱେଇ ଥାଏ ଲହରେଇ ଲହରେଇ । ଜଙ୍ଗଲର ସେ ଅଭାବନୀୟ ଡାକ ତା' ଭିତରେ ଅଜଣା ରୋମାଞ୍ଚ ସୃଷ୍ଟି କରେ । ସେ କେମିତି ମୁକୁଳି ଯାଏ ନିଜ ଭିତରେ । ଗୋଟାଏ ଜାନ୍ତବ କ୍ଷୁଧା ଜାବୁଡ଼ି ଧରେ ସମସ୍ତ ଶରୀରକୁ । ତା'ର ଇଚ୍ଛାହୁଏ ସବୁ ବନ୍ଧନ ଭାଙ୍ଗି କୁଆଡ଼େ ହଜିଯାଆନ୍ତା । ଏକ ଆଦିମ ଉଲ୍ଲାସରେ, ପୂର୍ବଜନ୍ମର ବଣ କୁକୁରଙ୍କ ଭଳି କେଉଁଆଡ଼େ ପଳେଇଯାଆନ୍ତା ।

ବସନ୍ତ ଯାଇ ପୁଣି ଶୀତ ଆସିଲା । ତୁନ୍ଦ୍ରା ଅଞ୍ଚଳରେ ଶୀତ ହିଁ ପ୍ରଧାନ ସମୟ । ଜନ୍ ଥର୍ଣ୍ଣଟନ୍ ଓ ତାଙ୍କର ଉଭୟ ସାଥୀଙ୍କ ହାତରୁ ପଇସା ସରି ଆସିଥାଏ । ନିଜକୁ



Digitized by srujanika@gmail.com

ଚଳେଇବାପାଇଁ ପୁଣି  କଞ୍ଚାପଇସା ରୋଜଗାର କରିବା ଦରକାର । ଅତଏବ ପେଟେ, ହାନ୍‌ସ ଓ ଥର୍ଣ୍ଣଟନ୍ ଠିକ୍ କଲେଯେ ସେମାନେ ଡସନ୍ ଯିବେ ।

ଉତ୍ତର ଅଞ୍ଚଳରେ ଡସନ୍ ଗୋଟିଏ ଭଲ ସହର । ଲୋକମାନେ କଠିନ ପରିଶ୍ରମୀ ଓ ସଉକ୍‌ପ୍ରିୟ । ବାଜି ମରାମରିରେ ଓସ୍ତାଦ । କିଛି ନା କିଛି ରୋମାଞ୍ଚପାଇଁ ଡସନ୍‌ବାସୀ ସବୁବେଳେ ଯେମିତି ଅପେକ୍ଷା କରିଥାଆନ୍ତି ।

ଅଳ୍ପଦିନ ଭିତରେ ବକ୍, ତା'ର ମାଲିକ ଥର୍ଣ୍ଣଟନ୍ ଓ ତାଙ୍କର ଦୁଇ ଜଣ ସାଙ୍ଗ ଏବଂ ସ୍କିଟ୍ ଓ ନିଗ୍ ସମସ୍ତେ ଡସନ୍ ସହରରେ ପହଞ୍ଚିଗଲେ । ଥର୍ଣ୍ଣଟନ୍‌ଙ୍କର ପୁରୁଣା ବାସସ୍ଥାନ ଥିଲା ଡସନ୍ ସହରରେ । ସେ ସେଠି ବେଶ୍ ପରିଚିତ ମଧ୍ୟ ।

ଏଣିକି ଥର୍ଣ୍ଣଟନ୍ ବାହାରକୁ ପାଦ ବଢ଼େଇଲେ ପାଖେ ପାଖେ ଥାଏ ବକ୍ । ମାଲିକଙ୍କ ଦେହରେ ଘଷି ହୋଇ ଚାଲିଲାବେଳେ ସେ ଏକ ଅଜବ୍ ଉଷ୍ମତା ଅନୁଭବ କରୁଥାଏ । କୌଣସି କାମରେ ଯାଆନ୍ତୁ ବା କେଉଁଠି ଖୋଲାଜାଗାରେ ବିଶ୍ରାମ ନିଅନ୍ତୁ, ବକ୍ କିନ୍ତୁ ଥର୍ଣ୍ଣଟନ୍‌ଙ୍କୁ  ମୁହୂର୍ତ୍ତେ ଛାଡ଼ିବାକୁ ନାରାଜ୍ ।

ଥରେ ଥର୍ଣ୍ଣଟନ୍ ଗୋଟିଏ ମଦ ଦୋକାନରେ ତାଙ୍କର ସାଙ୍ଗ ଦୁଇ ଜଣଙ୍କ ସହ ବସି ମଦ ପିଉଥାଆନ୍ତି । ମଦ ଆସର ବେଶ୍ ଜମିଥାଏ । ସେତିକିବେଳେ ଗୋଡ଼ ପାଖରେ ଶୋଇରହି ବକ୍ ନିରୀକ୍ଷଣ କରୁଥାଏ ସମସ୍ତଙ୍କୁ । ''କାଳିଆ ବର୍ଟନ''ନାମକ ଜଣେ ବଦ୍ ମିଜାଜୀ ଲୋକ ମଧ୍ୟ ସେଇପାଖରେ ବସି ଗ୍ଲାସ୍ ପରେ ଗ୍ଲାସ୍ ମଦ ଟେଣ୍ଠିବାରେ ଲାଗିଥାଆନ୍ତି । ସମସ୍ତେ ଜାଣନ୍ତି ବର୍ଟନ ଜଣେ ଖଳ-ପ୍ରକୃତିର ମଣିଷ । କଥା କଥାକେ ହାତ ଉଠିଯାଏ ତାଙ୍କର । ମୁହଁରେ କଥାବାର୍ତ୍ତା କରିବା ଅପେକ୍ଷା ପିଟାପିଟି ଓ ମୁଣ୍ଡଫଟାଫଟିରେ ତାଙ୍କର ଖୁବ୍ ବିଶ୍ୱାସ ।

ବକ୍ ଦେଖିଲା 'ବର୍ଟନ୍' କଣ୍ଢାବାଡ଼ରେ ଲୁଗା ପକେଇ କଳିକଲାଭଳି ଜଣେ ନିରୀହ ଗରାଖଙ୍କ ସହିତ ଝଗଡ଼ା ଆରମ୍ଭ କରିଦେଲେ । ନିରୀହ ଲୋକଟି ଭୁଲ ସ୍ୱୀକାର କରି ଚାଲି ଯିବାକୁ ବାହାରିଲେ ମଧ୍ୟ, 'ବର୍ଟନ୍' ସେଥିପାଇଁ ପ୍ରସ୍ତୁତ ନ ଥିଲେ । ତାଙ୍କର ଇଚ୍ଛାଥିଲା, ଯେମିତି ହେଲେ ଗୋଟାଏ କାଣ୍ଡ ସେ ସେଠି ଭିଆଇବେ । ଲୋକଟି ଯେତେ କାକୁତି ମିନତି ହେଲେ ବି ବର୍ଟନ ଉଠିଯାଇ ଗୋଟାଏ ଶକ୍ତ ଧକ୍‌କା ପକେଇଲେ ତାଙ୍କୁ । ଏଭଳି ଅମାନୁଷିକ କାର୍ଯ୍ୟ କିନ୍ତୁ ଅସହ୍ୟ ହେଲା ଥର୍ଣ୍ଣଟନ୍‌ଙ୍କ ପାଇଁ । ତାଙ୍କର ନୈତିକ ବିଚାରବୋଧ ତାଙ୍କୁ ଚୁପ୍ ହେଇ ବସି ରହିବାକୁ ଦେଲାନି । ସେ ଉଠି ପଡ଼ି ଠିଆ ହୋଇଗଲେ ବର୍ଟନଙ୍କ ଆଗରେ । ଆଉ ଯେମିତି ବର୍ଟନ ସେ ଲୋକଜଣଙ୍କ ଆଡ଼କୁ ପାଦେ ନ ଆଗାନ୍ତି ସେଥିପାଇଁ ସତର୍କ କରିଦେଲେ ତାଙ୍କୁ । ବର୍ଟନ୍ କିନ୍ତୁ ମାନିବା



Digitized by srujanika@gmail.com

ଲୋକ ନୁହନ୍ତି । ଅଯଥା ରାଗରେ ଫଁ ଫଁ ହେଉଥାନ୍ତି ସେ । କିଛି ସମୟ କଥା କଟା କଟି ଚାଲିବା ପରେ ବର୍ଟନ୍ ମାଡ଼ିଆସି ଥର୍ଣ୍ଣଟନ୍‌ଙ୍କୁ ମାରିଲେ ଏକ ଶକ୍ତ ଘୁଷି । ସେଇ ଗୋଟିଏ ଥରର ଆଘାତରେ ହଡ଼ବଡେଇଗଲେ ଥର୍ଣ୍ଣଟନ୍ । ମୁଣ୍ଡ ଘୂରିଗଲା ତାଙ୍କର । ସେଇଠି ହୁଏତ ପଡିଯାଇଥାନ୍ତେ ସେ । ମାତ୍ର ଭାଗ୍ୟଭଲ ପାଖରେ ଥିବା ଗୋଟାଏ ବାଡ଼କୁ ଆଶ୍ରୟ କରି ଅଟକିଗଲେ ସେ ।

ଏତିକିବେଳେ ସେଠାରେ ସମବେତ ହୋଇଥିବା ଲୋକମାନେ ଗୋଟାଏ ଅଦ୍ଭୁତ ଶବ୍ଦ ଶୁଣିଲେ । ତାହା ଭୁକିବା ଶବ୍ଦ ନୁହେଁ କି ଖିଙ୍କାରିବା ଶବ୍ଦ ବି ନୁହେଁ । ଏକ ପ୍ରକାର ଗର୍ଜନ କହିଲେ ଚଳେ । ସମସ୍ତେ ଦେଖିଲେ ବକ୍‌ର ପୂରା ଶରୀରଟା ଗୋଟାଏ କୁଦାରେ ଉପରକୁ ଉଠିଯାଇ ବର୍ଟନ୍‌ଙ୍କ ତଣ୍ଡି ପାଖକୁ ଝାମ୍ପ ମାରିବାକୁ ଉଦ୍ୟତ ହେଉଛି । ବର୍ଟନଙ୍କର ଭାଗ୍ୟ କିନ୍ତୁ ଟାଣ ନିଜ ଅଜାଣତରେ ବି ତାଙ୍କର କହୁଣୀଟା ଠେବମାରି ଅଟକେଇଦେଲା ବକ୍‌କୁ । ମାତ୍ର ବକ୍‌ର ଧକ୍‌କାରେ ସେ ଭାରସାମ୍ୟ ହରାଇ ଏକପାଖିଆ ପଡ଼ିଗଲେ ତଳେ । ସେଇ ମଉକାରେ ବକ୍ ତାଙ୍କର ଗୋଟାଏ ହାତକୁ ଖୁବ୍ ଜୋରରେ କାମୁଡ଼ି ପକାଇ ପୁଣି ଥରେ ବେକ ଆଡ଼କୁ ମାଡ଼ିଗଲା । କିଲିବିଲି ହେଇ ବର୍ଟନ, ହାତକୁ ଛନ୍ଦି ଚେଷ୍ଟା କରୁଥାନ୍ତି ନିଜକୁ ରକ୍ଷା କରିବାପାଇଁ । ତଥାପି ବକ୍ ତାଙ୍କୁ ଖଣ୍ଡିଆ ଖାବରା କରି ଲହୁଲୁହାଣ କରିଦେଲା ।

ବର୍ଟନ ରକ୍ତ ଜୁଡୁବୁଡୁ ହେଇ ଛଟପଟ ହେଉଥାନ୍ତି । ଏତେବେଳକେ ଯାଇ ସମବେତ ଦର୍ଶକଙ୍କର ଚେତା ଫେରିଲା । ସେମାନେ ସମସ୍ତେ ହାଉ ହାଉ କରି ବକ୍‌କୁ ଭଗେଇ ଦେଲେ ସେଠୁ । କେହି ଜଣେ ଦୌଡ଼ିଯାଇ ଡାକ୍ତରଙ୍କୁ ଡାକି ଆଣିଲେ । ବକ୍ ତଥାପି ଲୋକଗହଳିଠାରୁ ଟିକେ ଦୂରରେ ଠିଆ ହେଇ ଗାଉଁ ଗାଉଁ ହଉଥାଏ । ଚେଷ୍ଟାକରୁଥାଏ ପୁଣି କେମିତି ମାଡ଼ି ଆସିବ ବର୍ଟନଙ୍କ ଆଡ଼କୁ ।

ସେଠି ଉପସ୍ଥିତ ଥିବା ଲୋକେ ସାଙ୍ଗେ ସାଙ୍ଗେ ବକ୍‌ର ବ୍ୟବହାର ଦେଖି ସେ କଥା ଉପରେ ବିଚାର ଆଲୋଚନା କରିବାରେ ଲାଗିପଡ଼ିଲେ । ଗୋଟାଏ ମଣିଷକୁ କ୍ଷତବିକ୍ଷତ କରିବା ଗୋଟାଏ କୁକୁର ପକ୍ଷେ ଏକ ଜଘନ୍ୟ ଅପରାଧ ।

ଅନେକ ବିଚାର ଆଲାଚନା ପରେ ସମସ୍ତେ ସମସ୍ୱରରେ ଗୋଟିଏ କଥା ଦୋହରେଇଲେ ଯେ ବକ୍ ଯାହା କରିଛି ତାହା ଯଥାର୍ଥ । ସେପରି ହିଂସ୍ର ଆଚରଣ କରିବାପାଇଁ ବର୍ଟନଙ୍କ ଅମାନୁଷିକ ବ୍ୟବହାର ତାକୁ ବାଧ୍ୟ କରିଥିଲା ବୋଲି କହିଲେ କିଛି ଭୁଲ୍ ହେବ ନାହିଁ । ସେଇ ମୁହୂର୍ତ୍ତରୁ ସାରା ଉତ୍ତରାଞ୍ଚଳରେ ବକ୍‌ର ଖ୍ୟାତି ବ୍ୟାପିଗଲା ।



Digitized by srujanika@gmail.com

ଆଲାସ୍କାରେ ଖାଉନ୍ଦମାନଙ୍କର ଭଲ ଭଲ କୁକୁରମାନଙ୍କ ସମ୍ପର୍କରେ ଚର୍ଚ୍ଚା କରିବା ଏକ ସାଧାରଣ କଥା । ଏଣିକି ଥର୍ଣ୍ଣଟନ୍‌ଙ୍କ କୁକୁର ବକ୍ ବିଷୟରେ ଲୋକେ ବେଶି କୁହାକୁହି ହେଲେ । ନିଜ ମାଲିକକୁ କେହି ଆକ୍ରମଣ କଲେ, ତା'ର ପୋଷା କୁକୁର ହାତରେ ଆକ୍ରମଣକାରୀ କେମିତି ଶାସ୍ତିପାଏ ତା'ର ଉଦାହରଣ ପାଲଟିଗଲା ବକ୍ । ଅନ୍ୟଲୋକମାନେ ନିଜ କୁକୁରସବୁ ବକ୍‌ଭଳି ଅନୁଗତ ହେବା ଉଚିତ୍ ବୋଲି କଥା କଥାକେ ମନ୍ତବ୍ୟ ଦେବା ମଧ୍ୟ ଆରମ୍ଭ କଲେ ।

ଥର୍ଣ୍ଣଟନ୍ ବି ବକ୍‌କୁ ପ୍ରଶଂସାକରି ଦୁଇ ଚାରିପଦ ବଢ଼େଇ କୁଢ଼େଇ କହିବାକୁ ପଛେଇଲେ ନାହିଁ । ମୋଟାମୋଟି ସେ ଇଲାକାରେ 'ବକ୍' ସବୁ କୁକୁରଙ୍କପାଇଁ ଏକ ଆଦର୍ଶ ଉଦାହରଣ ପାଲଟିଗଲା ।

ଏଇମିତି ଦିନେ କଥା ପଡୁପଡୁ ଜଣେ ମାଲିକ ନିଜ କୁକୁର ବିଷୟରେ କହିଲେ - ''ମୋ କୁକୁର କିନ୍ତୁ ପାଞ୍ଚ ଶହ ପାଉଣ୍ଡ ଓଜନ ଲଦାହେଇଥିବା ଗୋଟେ ସ୍ଲେଜ୍‌ଗାଡ଼ିକୁ ଏକା ଝାଙ୍କକେ ଟାଣି ନେଇ ପଳେଇ ଯାଇ ପାରିବ ।'' ତାଙ୍କ କଥା ଶୁଣୁ ଶୁଣୁ ଆଉ ଜଣେ କଥା ଯୋଡ଼ିଲେ- ମୋ କୁକୁର ତ ଛଅ ଶହ ପାଉଣ୍ଡ ଟାଣିନେବ । ଆଉ କେହି ପାଦେ ବଢ଼ିଯାଇ କହିଲେ, ଆରେ ଛଅଶହ କ'ଣ, ମୋ କୁକୁର ତ ସାତ ଶହ ପାଉଣ୍ଡ ଅତି ସହଜରେ ଭିଡ଼ିନେଇ ପାରିବ । ଥର୍ଣ୍ଣଟନ୍ ସେଇଠି ବସିଥାନ୍ତି । ବକ୍‌ର ପ୍ରଶଂସା ଯୋଗୁଁ କୁକୁର ମାଲିକ ହିସାବରେ ସେ ସେତେବେଳକୁ ସାରା ସହରରେ ପ୍ରସିଦ୍ଧ ।

ଥର୍ଣ୍ଣଟନ୍ କ'ଣ କହିବେ ବୋଲି ମୁହଁ ଖୋଲିଲେ । ସମସ୍ତଙ୍କ ନଜର ତାଙ୍କ ଉପରେ । ସବୁଠାରୁ ପ୍ରସିଦ୍ଧ କୁକୁରର ସେ ମାଲିକ ।

ବେପରୁଆ ଢଙ୍ଗରେ ସେ କହିଲେ - ଓଃ ଏଇଟା କ'ଣ ଗୋଟେ ବଡ଼ କଥା ! ମୋ ବକ୍ ପାଇଁ ତ ହଜାରେ ପାଉଣ୍ଡର ଓଜନ ବି ସେମିତି କିଛି ସମସ୍ୟା ନୁହେଁ ।

ଚାରିପଟେ ଘେରିଥିବା ଲୋକେ ତାଙ୍କ କଥାଶୁଣି ଚମତ୍କୃତ ହେଲେ । ଜଣେ ଅବିଶ୍ୱାସ କଲାଭଳି କହିଲେ - ''କ'ଣ ହେଲା, ଯେତେ ବଳୁଆ କୁକୁର ହେଲେବି ହଜାରେ ପାଉଣ୍ଡର ଓଜନ ସ୍ଲେଜଗାଡ଼ିରେ ଟାଣି ନେଇ ପାରିବ ? ଅସମ୍ଭବ କଥା । ଶହେ ଗଜ ଖଣ୍ଡେ ଟାଣିନଉ ତ ଦେଖିବା !''

ଏ ଭଦ୍ରବ୍ୟକ୍ତି ହେଉଛନ୍ତି, ମାଥ୍ୟୁସନ୍ । ସେ ଜଣେ ଧନୀ ବ୍ୟବସାୟୀ । ତାଙ୍କ କୁକୁର ସାତ ଶହ ପାଉଣ୍ଡ ଭିଡ଼ିନେଇ ପାରିବ ବୋଲି ଟିକିଏ ଆଗରୁ ସେ ଯୁକ୍ତି କରୁଥିଲେ ।ପ୍ରକୃତରେ ବକ୍ ଯେ ହଜାରେ ପାଉଣ୍ଡ ଓଜନର ଜିନିଷ ସହଜରେ ଭିଡ଼ିନେଇ



Digitized by srujanika@gmail.com

ପାରିବ ସେ କଥା ନିଜେ ଥର୍ଣ୍ଣଟନ୍ ବି ବିଶ୍ୱାସ କରୁ ନ ଥିଲେ । ମାତ୍ର କହୁ କହୁ, କହିତ ଦେଇଚନ୍ତି । କ'ଣ କରିବେ ଏବେ ? ସବୁଠାରୁ ବଡ଼ କଥା ହେଲା ଜମାଟ ବାନ୍ଧିଥିବା ବରଫ ଉପରେ ହଜାରେ ପାଉଣ୍ଡର ଓଜନ ଲଦା ହେଇଥିବା ଗୋଟେ ସ୍ଲେଜ୍‌ଗାଡ଼ିକୁ ଝାଙ୍କି ଗତିଶୀଳ କରାଇବା । ସେଥିପାଇଁ ନିଜେ ସ୍ଲେଜ୍ ଚାଳକଙ୍କୁ ଗାଡିର ଦୁଇପଟୁ ଦୋହଲେଇ ପ୍ରଥମେ ସ୍ଲେଜ୍‌ର ଚକକୁ ବରଫ ଜମାଟରୁ ମୁକୁଳେଇବାକୁ ପଡ଼େ । ନହେଲେ କେବଳ ଗୋଟେ କୁକୁର, ତାକୁ ଟାଣି ବରଫ ଦେହରୁ ଛଡ଼ାଇବା ଅସମ୍ଭବ କଥା । ସେ ଯେତେ ବଳୁଆକୁକୁର ହଉ ନା କାହିଁକି !

ଥର୍ଣ୍ଣଟନ୍‌ଙ୍କ ମୁହଁରୁ କଥାଟା ଥରେ ବାହାରି ପଡ଼ିଚି । ସେ ପଛକୁ ହଟିବା ଲୋକ ନୁହନ୍ତି । ଅତଏବ ଧୀର ଅଥଚ ଗମ୍ଭୀର କଣ୍ଠରେ କହିଲେ-''ବକ୍ ନିଶ୍ଚିତ ହଜାରେ ପାଉଣ୍ଡ ଓଜନ ଲଦାହୋଇଥିବା ଗୋଟେ ସ୍ଲେଜଗାଡ଼ିକୁ ଶହେଗଜ ଟାଣିନେଇ ପାରିବ ।''

ମାଥ୍ୟୁସନ୍ କହିଲେ - ''ମୁଁ ବାଜି ମାରିବାକୁ ପ୍ରସ୍ତୁତ ଅଛି । ବର୍ତ୍ତମାନ ମୋ ପାଖରେ ଏକ ହଜାର ଡଲାର ଅଛି । ମୁଁ ସେସବୁ ଧନ ଏଇକ୍ଷଣି ବାଜି ଲଗେଇବାକୁ ପ୍ରସ୍ତୁତ । ମୁକାବିଲା ହେଇଯାଉ ।'' ଏତକ କହି ସେ ହାତରେ ଧରିଥିବା ସୁନାମୋହରର ଗୋଟାଏ ଥଳିକୁ ଫିଟେଇ ସାମ୍‌ନାରେ ଥିବା ଟେବୁଲ୍ ଉପରେ ଅଜାଡ଼ି ଦେଲେ ।

ବର୍ତ୍ତମାନ ସମସ୍ତେ ଚୁପ୍ ହେଇଗଲେ । ଏଥର ନଜର ଯାଇ ଅଟକିଲା ଥର୍ଣ୍ଣଟନ୍‌ଙ୍କ ଉପରେ । ଥର୍ଣ୍ଣଟନ୍ ଓ ତାଙ୍କର ବନ୍ଧୁମାନେ ଏଣିକି ଇତସ୍ତତଃ ଜଣାପଡ଼ିଲେ । ହଜାରେ ଡଲାର କିଛି କମ୍ ରକମ ନୁହେଁ । ବକ୍ ହୁଏତ ହଜାରେ ପାଉଣ୍ଡ ଟାଣିନେଇ ପାରେ ମାତ୍ର ବରଫ ଜମାଟରେ ଥିବା ଗୋଟେ ଓଜନଭର୍ତ୍ତି ସ୍ଲେଜକୁ ଏକା ଏକା ଝାଙ୍କି ଟାଣିନେବା ଅସମ୍ଭବ ବ୍ୟାପାର । ଥର୍ଣ୍ଣଟନ୍ ଓ ତାଙ୍କ ବନ୍ଧୁମାନଙ୍କ ପାଖରେ ଥିବା ସବୁ ପଇସାକୁ ମିଶେଇଲେ ଛଅଶହ ଡଲାର ଖଣ୍ଡେ ହବ । ଅତଏବ ମାଥ୍ୟୁସନ୍‌ଙ୍କ କଥାଶୁଣି ଥର୍ଣ୍ଣଟନ୍‌ଙ୍କ ମୁହଁଟି ଟିକେ ଶୁଖିଗଲା । ଗୋଟାଏ ଖାପ୍‌ଚାରେ ପଡ଼ିଗଲାଭଳି ସେ ଅନୁଭବ କଲେ । ପାଟିରୁ ଅସମ୍ଭବ କଥାଟାଏ ତ ଖସିଯାଇଚି, ଏବେ କରିବେ କ'ଣ ? ମାଥ୍ୟୁସନ୍ ଏସବୁ କଥା ଲକ୍ଷ୍ୟ କରି ଜିଭ ଚାକୁଳେଇ ହସିବାକୁ ଲାଗିଲେ । ''ଚିନ୍ତା ନାହିଁ । ବାହାରେ ମୋ ସ୍ଲେଜଗାଡ଼ି ଥୁଆ ହେଇଚି । ସେଥିରେ ଲଦାହେଇଚି କୋଡ଼ିଏଟି ଅଟାବସ୍ତା । ବସ୍ତା ଗୋଟାକ ପ୍ରାୟ ପଚାଶ ପାଉଣ୍ଡ ଲେଖାଏଁ ହବ । ମୁଁ କହୁଚି ଚାଲ ବାହାରକୁ ଯିବା । ଦେଖିବା, ତୁମର ଏ ବିଖ୍ୟାତ କୁକୁର ବକ୍ କେମିତି ହଜାରେ ପାଉଣ୍ଡର ଓଜନଲଦା ଗାଡ଼ିକୁ ଏକା ଏକା ଟାଣୁଚି । କ'ଣ ରାଜି ତ ?''



Digitized by srujanika@gmail.com

ଥର୍ଣ୍ଣଟନ୍‌ଙ୍କର ପାଟି ଖନିମାରିଗଲା । ଏତିକିବେଳେ ତାଙ୍କର ନଜର ପଡ଼ିଲା ଗହଳି ଭିତରେ ଠିଆ ହୋଇଥିବା ଜିମ୍ ଓବ୍ରାଏନ୍‌ଙ୍କ ଉପରେ । ଜିମ୍ ତାଙ୍କର ଜଣେ ଭଲ ବନ୍ଧୁ । ବେଶ୍ ଧନୀ ଲୋକ । ଅନ୍ୟମାନଙ୍କ ଭଳି ସିଏ ବି ଥର୍ଣ୍ଣଟନଙ୍କ ଉତ୍ତରକୁ ଅପେକ୍ଷା କରିଥାନ୍ତି । ଜିମ୍ ଆଖିଠାରି ଥର୍ଣ୍ଣଟନ୍‌ଙ୍କୁ ଇସାରା ଦେଲେ - ଯଦି ଚାହୁଁଚ ମାଥ୍ୟୁସନ୍‌ଙ୍କ ଆହ୍ୱାନକୁ ଗ୍ରହଣ କରିନେଇ ପାର । ପାଖକୁ ଲାଗିଆସି ସେ କହିଲେ, ‘‘ଏଇ ବର୍ତ୍ତମାନ ମୁଁ ତୁମକୁ ଏକହଜାର ଡଲାର ଦେଇ ଦଉଚି । ମାତ୍ର ମୋର ଧାରଣା ତୁମେ ଏ ବାଜି ମରାମରିରେ ଜିଣି ପାରିବ ନାହିଁ ।’’

ମାଥ୍ୟୁସନ୍‌ଙ୍କର ଆହ୍ୱାନକୁ ଥର୍ଣ୍ଣଟନ୍ ଗ୍ରହଣ କରିନେଲେ । ବାଜି କାଏମ୍ ରହିଲା । ଏଣିକି ବାଜି ପରୀକ୍ଷା ହେବ । ଦେଖଣାହାରିଙ୍କ ଭିତରେ ପ୍ରବଳ ଉତ୍ସାହ । ପାଟିଗୋଳ । ମାଥ୍ୟୁସନ୍ ଓ ଥର୍ଣ୍ଣଟନ୍‌ଙ୍କ ପଛେ ପଛେ ଉଭୟଙ୍କର ସମର୍ଥକମାନେ ପଦାକୁ ଆସିଲେ । ଥର୍ଣ୍ଣଟନ୍ ଦେଖିଲେ ଯେ ସ୍ଲେଜ୍ ଗାଡ଼ିଟି ବାହାରେ ବରଫ ଉପରେ ଥୁଆ ହୋଇଚି । ସେଥିରେ ଯୋଚା ହୋଇଚନ୍ତି ଦଶଟି କୁକୁର । ମାଲ ବୋଝେଇ ଗାଡ଼ିଟିକୁ ଦେଖି ତାଙ୍କର ମନ ଦବିଗଲା । ଯେଉଁ ଗାଡ଼ିକୁ ଦଶଟା କୁକୁର ଟାଣୁଚନ୍ତି, ତାକୁ ବକ୍ ଏକା କ'ଣ ସତରେ ଶହେ ଗଜ ଟାଣିନେଇ ପାରିବ ? ସେଥିରେ ପୁଣି ସ୍ଲେଜ୍‌ର ତଳ ଏ ଭିତରେ ବରଫ ଗୁଣ୍ଡ ଜମି ଆଉ ଟିକିଏ ଅଧିକ ଜମାଟ ବାନ୍ଧିଗଲାଣି ।

ଦର୍ଶକମାନେ ପାଟିତୁଣ୍ଡ କରୁଥାନ୍ତି । କିନ୍ତୁ ଅଧିକାଂଶ ମତ ଦେଉଥାନ୍ତି ଯେ ଏହା ଏକ ଅସମ୍ଭବ ବ୍ୟାପାର । ଗୋଟାଏ କୁକୁରପାଇଁ ଗୋଟାଏ ମାଲବୋଝେଇ ସ୍ଥିରସ୍ଲେଜ୍‌କୁ ବିନା ସାହାଯ୍ୟରେ ଗତିଶୀଳ କରାଇ ଟାଣିବା ଅସମ୍ଭବ ନୁହେଁ ତ ଆଉ କ'ଣ ?

ମାଥ୍ୟୁସନ୍, ଦର୍ଶକମାନଙ୍କ ମନ୍ତବ୍ୟ ଶୁଣି ଉଲ୍ଲସିତ ହେଉଥିଲେ । ଆରେ ! ଯେ କୌଣସି ଲୋକ ଆଖି ବୁଜି ଏ କଥା କହିଦେଇପାରେ । ଅତଏବ ତାଙ୍କ ମନରେ ଆଉ ଟିକିଏ ବଗୁଲିଆପଣ ପ୍ରକାଶ ପାଇଲା । ଥର୍ଣ୍ଣଟନ୍‌ଙ୍କ ଆଡ଼କୁ ହାତ ହଲେଇ ସେ କହିଲେ - ‘‘କଣ କହୁଚ ? ମୁଁ ଏ ବାଜିମରା ଟଙ୍କାକୁ ଦୁଇ ଗୁଣ କରି ଆଉ ହଜାରେ ଡଲାର ବଢ଼େଇ ଦେବାକୁ ପ୍ରସ୍ତୁତ । କ'ଣ ରାଜି ?’’

ଥର୍ଣ୍ଣଟନ୍ କ'ଣ ଆଉ କରିବେ ? ଯେମିତି ହେଲେ ମୁହଁ ରଖିବାକୁ ପଡ଼ିବ । ସଙ୍ଗେ ସଙ୍ଗେ ସେ ତାଙ୍କର ଅନ୍ୟ ଦୁଇ ବନ୍ଧୁ ହାନ୍‌ସ ଆଉ ପେଟେଙ୍କ ସହ ପରାମର୍ଶକରି ଆଉ ମାତ୍ର ଛଅଶହ ଡଲାର ଆଗକୁ ବଢ଼ିଲେ । ମାଥ୍ୟୁସନ୍ ତଥାପି ଟଙ୍କାର ତାଡ଼ା ଦର୍ଶକମାନଙ୍କ ଆଗରେ ହଲାଇ ନିଜର ବେପାରୁଆ ଢଙ୍ଗ ଦେଖାଉଥାନ୍ତି ।



Digitized by srujanika@gmail.com

ଏଣିକି ପରୀକ୍ଷା ଆରମ୍ଭ ହୋଇଗଲା । ମାଲବୋଝେଇ ସ୍ଲେଜଗାଡ଼ିଟିରୁ ଦଶଟିଯାକ କୁକୁରଙ୍କୁ ଫିଟେଇ ଅଣାଗଲା । ସେମାନଙ୍କ ସ୍ଥାନରେ ସବୁ ଲଗାମ୍‌କୁ ଗଇଁଠାଳ କରି ଯୋଚାହେଲା ବକ୍ । ବକ୍‌କୁ ଦେଖି ଦେଖଣାହାରି ସମସ୍ତେ କରତାଳି ଦେଲେ । ଦେଢ଼ଶହ ପାଉଣ୍ଡ ଓଜନର ବକ୍ ଦିଶୁଥାଏ ବେଶ୍ ଶକ୍ତିଶାଳୀ ଏବଂ ତେଜୀୟାନ । ହାଡ଼ମାଂସର ଶରୀରରେ ତା'ର ଲୁହାର ସାମର୍ଥ୍ୟ ।

ବକ୍‌କୁ ଦେଖି ଜଣେ ଦର୍ଶକ ଏପରି ମୁଗ୍ଧ ହେଇଗଲେ ଯେ ଥର୍ଣ୍ଣଟନ୍‌ଙ୍କ ପାଖକୁ ଲାଗିଆସି ନିଜଆଡୁ ଆଠ ଶହ ଡଲାର ଯାଚିଲେ । କହିଲେ, "ନିଅ ଏହାକୁ ମିଶାଇ ଦୁଇ ହଜାର ଡଲାରରେ ବାଜି ଲଗାଅ । ହାରିଗଲେ ବି ମୋ ମନରେ ଏତେ ଟିକେ ଦୁଃଖ ହବ ନାହିଁ ।"

ଥର୍ଣ୍ଣଟନ୍‌ଙ୍କୁ ସେତେବେଳେ କ'ଣ ଗୋଟାଏ ଗ୍ରାସ କରିସାରିଥାଏ । ସେ ଆଉ କାହା କଥା ଶୁଣିବାକୁ ପ୍ରସ୍ତୁତ ନ ଥାନ୍ତି । ଭଦ୍ରଲୋକଙ୍କ କଥାର ଉତ୍ତର ନ ଦେଇ ସେ ବକ୍ ପାଖରେ ଆଣ୍ଠୁପକେଇ ବସି ପଡ଼ିଲେ । ଆଦରରେ ଧରିପକେଇଲେ ତା'ର ମୁଣ୍ଡକୁ । ତା'ପରେ ତା'ର ଗାଲକୁ ନିଜ ମୁହଁ ପାଖକୁ ଆଣି ଫୁସ୍ ଫୁସ୍ କରି କହିଲେ- "ବକ୍ ! ଏଇଟା ମୋର ଇଜ୍ଜତର କଥା । ତୋ'ବନ୍ଧୁର ଇଜ୍ଜତର କଥା । ଯଦି ମତେ ପ୍ରକୃତରେ ଭଲପାଉ ତେବେ ତୋ' ଭିତରେ ଥିବା ସମସ୍ତ ଶକ୍ତି ଲଗେଇ ଗାଡ଼ିକୁ ଭିଡ଼ିବୁ । ପ୍ରମାଣ କରିଦେବୁ ଯେ ପ୍ରକୃତରେ ତୁ' କେତେ ଶକ୍ତିଶାଳୀ !"

ପ୍ରତ୍ୟୁତ୍ତରରେ ବକ୍ ଥର୍ଣ୍ଣଟନ୍‌ଙ୍କର ଥଣ୍ଡା ହାତଟାକୁ ଟିକେ ଚାଟିଦେଲା । ତା'ପରେ ଗଭୀରଭାବେ ଚାହିଁ ରହିଲା ତାଙ୍କର ମୁହଁକୁ ।

ଏଥର ଥର୍ଣ୍ଣଟନ୍ ବସିଥିବା ସ୍ଥାନରୁ ଉଠିପଡ଼ିଲେ । 'ବକ୍'କୁ ଚାହିଁ କହିଲେ- ବାସ୍ । ଏଥର ପ୍ରସ୍ତୁତ ହେଇଯା । ସମସ୍ତ କୋଳାହଳକୁ ପଛରେ ପକାଇ ଥର୍ଣ୍ଣଟନ୍ ପାଟି କରି ଉଠିଲେ- ଏକ୍, ଦୋ, ତିନ୍ ।

ବକ୍, ତିନ୍ ଶୁଣିବାମାତ୍ରେ ପ୍ରଥମେ ଡାହାଣ ପଟକୁ ଗୋଟାଏ ଝାଙ୍କ ମାରିଲା । ସେଥିରେ ସମଗ୍ର ସ୍ଲେଜ୍‌ଟାର ଶରୀର ଦୋହଲି ଗଲା ଓ ତଳପଟୁ କଟ୍ କଟ୍ କରି ଗୋଟାଏ ଶବ୍ଦ ମଧ୍ୟ ବାହାରି ଆସିଲା ।

ଟାକରା ଫୁଟେଇ ହୁସ୍ ହୁସ୍ କରି ଉତ୍ସାହିତ କରୁଥାନ୍ତି ଥର୍ଣ୍ଣଟନ୍ । ଏବେ ନିଜର ସମସ୍ତ ଓଜନ ଖଟେଇ ବକ୍ ବାଁ ପଟକୁ ଆଉ ଗୋଟାଏ ଝାଙ୍କ ମାରିଲା । ମନେହେଲା ସ୍ଲେଜ୍‌ଗାଡ଼ିଟା ଯେମିତି ସେଇ ଝାଙ୍କରେ ତଳେ ଲାଗି ରହିଥିବା ବରଫ ଜମାଟରୁ



Digitized by srujanika@gmail.com

ପୂରାପୂରି ମୁକୁଳି ଗଲା । ଦର୍ଶକମାନେ ନିଃଶ୍ୱାସ ବନ୍ଦକରି ଦେଖୁଥାନ୍ତି ବକ୍‌ର ଗାଡ଼ିଟାଣିବାର କୌଶଳକୁ ।

ହଠାତ୍ ବିରାଟ ପାଟି କରି ଥର୍ଣ୍ଣଟନ୍ ଡାକଦେଲେ- ମସ୍ । ବକ୍ ମସ୍ ।

ଆଗ ଗୋଡ଼ ଦୁଇଟାକୁ ବରଫରେ ପୋତିଦେଇ, ବକ୍ କୁଞ୍ଚେଇ ଆଣିଲା, ଦୁଇଟା ଯାକ ପଛ ଗୋଡ଼ । ତା'ର ବିରାଟ ଛାତିଟାକୁ ଆଗକୁ ଉଗୁଳେଇ ସେ ସମସ୍ତ ବଳ ପ୍ରୟୋଗ କରି ଚେଷ୍ଟାକଲା ଆଗକୁ ମାଡ଼ିଯିବାକୁ । ଛାତିଟା ଧୀରେ ଧୀରେ ଆଣ୍ଠିହୋଇ ନଇଁ ଆସିଲା ବରଫ ଉପରକୁ । ଗୋଡ଼ ଇତସ୍ତତଃ ହେଲା ।

କେତେବେଳକେ ହଲି ହଲି ସ୍ଲେଜ୍‌ଗାଡ଼ିଟା ଆଗକୁ ଘୁଞ୍ଚିଲାପରି ଲାଗିଲା ମଟ୍‌ମାଟ୍ ଶବ୍ଦ କରି । ହଠାତ୍ ଚିକ୍‌କଣ ବରଫ ଉପରେ ବକ୍‌ର ଗୋଟାଏ ଗୋଡ଼ ଖସିଗଲା । ଆହା... ଚୁ ଚୁ... କରି ଗୋଟାଏ ସମବେତ ଚିତ୍କାର ବାହାରି ଆସିଲା ଦେଖଣାହାରିଙ୍କ ତୁଣ୍ଡରୁ । ତେଣିକି ଧୀରେ ଧୀରେ ଇଞ୍ଚ ଇଞ୍ଚ କରି ବକ୍ ଟାଣିବାକୁ ଲାଗିଲା ମାଲ୍‌ବୋଝେଇ ଗାଡ଼ିଟାକୁ । ଟିକିଏ ପରେ ସ୍ୱାଭାବିକ ଢଙ୍ଗରେ ଆଗେଇଲା ସ୍ଲେଜ୍ ଗାଡ଼ି । ବୀରଦର୍ପରେ ଯୁଝିଲାପରି ସମସ୍ତ ବଳଖଟେଇ ମାଡ଼ିଯାଉଥାଏ ବକ୍ । ସଭିଏଁ ଥଅ ହୋଇ ଚାହିଁରହିଥାନ୍ତି । ଥର୍ଣ୍ଣଟନ୍‌ଙ୍କର ଗୋଡ଼ ତଳେ ଲାଗୁ ନ ଥାଏ । ଗାଡ଼ି ପଛେ ପଛେ ଦଉଡ଼ି ସେ ବକ୍‌କୁ ଉତ୍ସାହିତ କରିବାରେ ଲାଗିଥାଆନ୍ତି ।

ଆରମ୍ଭ ସ୍ଥାନରୁ ଶହେ ଗଜ ଦୂରରେ ଚିହ୍ନ ସ୍ୱରୂପ ଗୋଛାଏ ଜାଳେଣିକାଠ ଥୁଆ ହୋଇଥାଏ ଆଗରୁ । ବକ୍ ଯେତେ ଯେତେ ସେ ସ୍ଥାନଆଡ଼କୁ ଆଗେଇ ଯାଉଥାଏ, ସେତେସେତେ ବଢୁଥାଏ ଉତ୍ସାହର କୋଳାହଳ । ଗାଡ଼ି ଯେତେବେଳେ କାଠଗୋଛାର ଚିହ୍ନ ଟପିଗଲା, କୋଳାହଳଟା ହଠାତ୍ ଗୋଟାଏ ଗଣଗର୍ଜନରେ ପରିଣତ ହେଲା । ସମସ୍ତ ଦେଖଣାହାରି ସତେ ଯେମିତି ଗଳାଫଟେଇ ଚିତ୍କାର କରିବାକୁ ଲାଗିଲେ । କିଏ ଖୁସିରେ ଉପରକୁ ଟୋପି ଫୋପାଡ଼ିଲା ତ କିଏ ନିଜର ମଫଲର୍ । ସଭିଏଁ ଖୁସିରେ ମାତି ଉଠିଲେ । ଏପରିକି ବାଜି ହାରିଥିବା ମାଥ୍ୟୁସନ୍ ମଧ୍ୟ ଖୁସିରେ ତାଳି ମାରିଲେ ।

କେବଳ ବକ୍ ନୁହେଁ, ଉପସ୍ଥିତ ସବୁ ଲୋକେ ଯେମିତି ବାଜି ଜିତିଗଲେ । ପରସ୍ପର କରମର୍ଦ୍ଦନ ଓ କୋଳାକୋଳି ଚାଲିଲା । ଘଟଣାଟିର ଅଲୌକିକତା ସମ୍ପର୍କରେ କହିବାକୁ ସମସ୍ତେ ବ୍ୟଗ୍ର । କେହି ଶୁଣିବାକୁ ପ୍ରସ୍ତୁତ ନାହାନ୍ତି । ଉଦାରମନା ଜିମ୍ ଓବ୍ରାଏନ୍ ଦଉଡ଼ିଯାଇ ସମସ୍ତଙ୍କପାଇଁ ତାଙ୍କ ତରଫରୁ ପାନୀୟ ବରାଦକରି ଆଣିଲେ ଏବଂ ସମସ୍ୱରରେ ଉପସ୍ଥିତ ଜନତା ବକ୍‌ର ଜୟଗାନ କରି ପାନୀୟ ପିଇବାକୁ ଲାଗିଲେ ।



Digitized by srujanika@gmail.com



ବକ୍ ଅସମ୍ଭବକୁ ସମ୍ଭବ କଲା



Digitized by srujanika@gmail.com

ଥର୍ଣ୍ଣଟନ୍ ଆଣ୍ଠୁ ପକେଇ ବକ୍ ସାମ୍ନାରେ ବସି ପଡ଼ିଥାଆନ୍ତି । ପରମ ଶ୍ରଦ୍ଧାରେ ବକ୍‌ର ମୁଣ୍ଡଟାକୁ ନିଜ ମୁଣ୍ଡ ଆଡ଼କୁ ଭିଡ଼ିଆଣି କ'ଣ ସବୁ କହି ଗେଲ କରିପକାଉଥାଆନ୍ତି । ଆଖି ତାଙ୍କର ଲୋତକାପ୍ଲୁତ, କଣ୍ଠ ବାଷ୍ପରୁଦ୍ଧ । କାନମୂଳ ସହ ବକ୍‌ର ମୁଣ୍ଡକୁ ଜାବୁଡ଼ି ଧରୁ ଧରୁ ସେ କହୁଥାନ୍ତି- "ତୁ କୁକୁର ନା ଦେବତା ବେ ?"

ବକ୍‌କୁ କିଣିବାପାଇଁ ମନ ବଳାଇଥିବା ଜଣେ ଦେଖଣାହାରି ଏତିକିବେଳେ ପାଖକୁ ଲାଗିଆସି କହିଲେ- "ଚମତ୍କାର ! ଚମତ୍କାର ! ଯାକୁ ପ୍ରଶଂସା ନ କରି କେହି ରହିପାରିବେ ନାହିଁ । ମୁଁ ଏହାକୁ କିଣିବାପାଇଁ ବାର ଶହ ଡଲାର ଦେବାକୁ ପ୍ରସ୍ତୁତ । ଆପଣ ମତେ ବିକିବେ ତ ?"

ଥର୍ଣ୍ଣଟନ୍ ବସିବା ସ୍ଥାନରୁ ଉଠି ଠିଆହେଲେ । କାନ୍ଦକାନ୍ଦ ହୋଇ କହିଲେ - "ନାଇଁ ଆଜ୍ଞା, ମୁଁ ପଛେ ଦରକାର ପଡ଼ିଲେ ମୋ ନିଜକୁ ବିକିଦେଇପାରେ, ମାତ୍ର ମୋ ପ୍ରିୟ ବକ୍‌କୁ କେବେ ନୁହେଁ । ଦୟାକରି ମତେ ଆଉ ଥରେ ପଚାରନ୍ତୁ ନାହିଁ ।"

ସେଇଦିନୁ ସାରା ଆଲାସ୍କା ଅଞ୍ଚଳରେ ଥର୍ଣ୍ଣଟନ୍‌ଙ୍କର ଏ କଥା ପଦକ ଲୋକେ ନିଜ ନିଜ ଭିତରେ କୁହାକୁହି ହେଲେ ।

ବକ୍‌ର, ବରଫ ଜମାଟରେ ପଶିଥିବା ହଜାରେ ପାଉଣ୍ଡ ଓଜନର ସ୍ଲେଜ୍‌ଗାଡ଼ିକୁ ଶହେ ଗଜଯାଏ ଅନାୟାସରେ ଭିଡ଼ି ନବାର ଘଟଣା ଗୋଟାଏ କାହାଣୀ ପାଲଟିଗଲା ସେଠି । ସେ ଅଞ୍ଚଳକୁ ଯେ ନୂଆ ଆସିଲା, ଏ କାହାଣୀଟି ଶୁଣିଲା ।

ବକ୍ ଗୋଟାଏ ପ୍ରସିଦ୍ଧ ଚରିତ୍ର ପାଲଟି ଗଲା ।

ମାତ୍ର କେତେ ମିନିଟ୍ ଭିତରେ ବକ୍ ଷୋହଳ ଶହ ପାଉଣ୍ଡ ରୋଜଗାର କଲା । ଭାଗ୍ୟର ଏପରି ହଠାତ୍ ପରିବର୍ତ୍ତନକୁ ଥର୍ଣ୍ଣଟନ୍, ପେଟେ ଏବଂ ହାନ୍‌ସ ବିଶ୍ୱାସ କରିପାରୁ ନ ଥଲେ । ବର୍ତ୍ତମାନ ସେମାନଙ୍କ ହାତରେ ଢେର୍ ପଇସା । ସୁନାସନ୍ଧାନରେ ଯିବାପାଇଁ ଯେଉଁସବୁ ପୋଷାକ ପରିଚ୍ଛଦ ଲୋଡ଼ା, ଏଇ ପଇସାରୁ ବର୍ତ୍ତମାନ ସେମାନେ ଯୋଗାଡ଼ କରିପାରିବେ ।

ସଙ୍ଗେ ସଙ୍ଗେ ସ୍ଥିର ହୋଇଗଲା ଯେ ସେମାନେ ଖୁବ୍ ଶୀଘ୍ର 'ୟୁକୋନ୍' ଅଭିମୁଖେ ଯାତ୍ରା କରିବେ । ଦିନ ସ୍ଥିର ହୋଇଗଲା । ନିର୍ଦ୍ଦିଷ୍ଟ ଦିନରେ ବକ୍ ଏବଂ ଆଉ ଛଅଗୋଟି କୁକୁରଙ୍କୁ ସ୍ଲେଜ୍ ଗାଡ଼ିରେ ଯୋଚି ସେମାନେ ଯାତ୍ରାର ପ୍ରଥମ ପାଦରେ ସତୁରି ମାଇଲ ଅତିକ୍ରମ କରିବାକୁ ଯୋଜନା କଲେ । ଲୋହିତ ଭାରତୀୟଙ୍କଭଳି



Digitized by srujanika@gmail.com

ଧୀରେ ଧୀରେ ରହି ରହି ଯାତ୍ରା କଲେ । ଯିବାବେଳେ ସେମାନେ ଶିକାର କରି ନିଜର ଖାଦ୍ୟ ସଂଗ୍ରହ କରୁଥାଆନ୍ତି । ସ୍ଲେଜ୍‌ଗାଡ଼ିରେ ମୁଖ୍ୟତଃ ଯନ୍ତ୍ରପାତି ଓ ଅସ୍ତ୍ରଶସ୍ତ୍ର ଲଦା ହୋଇଥାଏ ।

ବକ୍‌ପାଇଁ ଏ ଯାତ୍ରା ଥିଲା ଏକ ଅସରନ୍ତି ଯାତ୍ରା । ବାଟସାରା ବୁଲାବୁଲି, ମଉଜ ମଜ୍‌ଲିସ୍, ମାଛଧରା, ଶିକାର । ନୂଆନୂଆ ଅଜଣା ଜାଗାର ନୂଆ ଉନ୍ମାଦନା । ବେଳେବେଳେ ଖାଇବା ପିଇବାରେ ଯେ ଅସୁବିଧା ହେଉ ନ ଥାଏ ସେପରି ନୁହେଁ । ଯାହା ଯେତେବେଳେ ମିଳିଲା । ମିଳିଲାବେଳେ ପେଟପୂରା ଭୋଜି । ନ ମିଳିଲାବେଳେ ଖାଡ଼ା ଉପବାସ । ଉଭୟ ମଣିଷ ଓ କୁକୁର ସମତାଳରେ ଜୀବନ ବିତାଉଥାଆନ୍ତି । ସବୁ ନିର୍ଭର କରୁଥାଏ ଶିକାର ମିଳିବା ଉପରେ ।

ଏ ଭିତରେ ଗରମ ଦିନ ଆସି ପହଞ୍ଚିଗଲା । ବରଫ ତରଳିବାକୁ ଲାଗିଲା । ଥର୍ଣ୍ଣଟନ୍ ଏବଂ ତାଙ୍କର ସହଯାତ୍ରୀମାନେ ବାଟରେ କାଠହାଣି ଭେଳା ତିଆରି କଲେ । ଯେତେବେଳେ ବାଟରେ ପାଣିପଡ଼େ କି ହ୍ରଦଟାଏ ପାରିହେବାକୁ ପଡ଼େ ସେମାନେ ସେଇ ଭେଳାରେ ଆହୁଲା ମାରି ଆଗକୁ ଯାଆନ୍ତି ।

ବାଟସାରା ବିଚିତ୍ର ଦୃଶ୍ୟ । କେଉଁଠି ମେଞ୍ଚା ମେଞ୍ଚା ଫୁଲ । କେଉଁଠି ଶିଉଳି ଆଉ ଶିଉଳି । ଷ୍ଟ୍ରବେରି କୋଳିର ପ୍ରାକୃତିକ କ୍ଷେତ । ବରଫ ମୁଣ୍ଡିଆତଳେ କେଉଁଠି ଛାଇ ଉହାଡ଼ରେ ବୁଦିବୁଦିକିଆ ଗଛ । ବଡ଼ ବୈଚିତ୍ର୍ୟମୟ ଏବଂ ଆଶଙ୍କାସଙ୍କୁଳ ଏ ଯାତ୍ରା ।

ଏଇଭଳି ଗଡ଼ି ଯାଉଥାଏ ଦିନ ରାତି । ମାସ ପରେ ମାସ । ମାତ୍ର ଉତ୍ତରଦିଗକୁ ଯାତ୍ରା, ସେଇଭଳି ନିରବଚ୍ଛିନ୍ନଭାବେ ଚାଲିଥାଏ ଥର୍ଣ୍ଣଟନ୍‌ଙ୍କ ଛୋଟ ଦଳଟିର ।

ଗରମ ଦିନଯାଇ ଶୀତ ଆସିଲା । ପୁଣି ବସନ୍ତ କାଳ । ଏତେଦିନକେ ସେମାନଙ୍କ ଦଳ ଆସି ପହଞ୍ଚିଲା ଗୋଟାଏ ସୁନ୍ଦର ଉପତ୍ୟକାରେ । ପାଇନ୍ ଗଛର ବଣ । ବରଫ ଚଟାଣ ଫଟେଇ କୁଳୁକୁଳୁ ଝରଣାର ଗୀତ ଶୁଭୁଥାଏ ଚାରିଆଡ଼େ । ସେଇଠି ଅଟକିଗଲେ ସେମାନେ । ଉପତ୍ୟକାରେ ବୁଲୁବୁଲୁ ଗୋଟିଏ ଝରଣାକୂଳରେ ପାଣିତଳେ ସୁନାର ସନ୍ଧାନ ପାଇଲେ । ବାଃ ! ଏତେଦିନକେ ଅସଲ ଜିନିଷର ସନ୍ଧାନ ମିଳିଲା । ସେଇଠି ଶେଷରେ କ୍ୟାମ୍ପ ପଡ଼ିଲା । ଆଗକୁ ଯିବା ଆଉ ଦରକାର ନାହିଁ । କ୍ୟାମ୍ପ୍ ପଡ଼ିବାପରେ ସମସ୍ତେ ଲାଗିଗଲେ କାମରେ । ଚିକ୍ ଚିକ୍ ସୁନାର ବାଲିପରି ଚିକିଚିକି ରେଣୁ, ସାନ ସାନ ଗୋଡ଼ି, ଗଦା ହୋଇଗଲା ଗୋଟେ ସ୍ଥାନରେ । କେତେ ହଜାର ଡଲାର ମୂଲ୍ୟ ହେବ ସେସବୁ । ତା'ପରେ ଛୋଟ ଛୋଟ ଚମଡ଼ା ବ୍ୟାଗ୍‌କରି



Digitized by srujanika@gmail.com

ସୁନାଗୋଡ଼ିଗୁଡ଼ିକୁ ସାଇତି ରଖାଗଲା । ଯେମିତିକି ଗୋଟିଏ ବ୍ୟାଗ୍‌ର ଦାମ ପଚାଶ ପାଉଣ୍ଡ ହେବ ।

ବକ୍ ଦେଖିଲା ସୁନାର ବ୍ୟାଗ୍‌ଗୁଡ଼ିକ ଗଦାହୋଇ ତା'ଠାରୁ ଅଧିକ ଉଚ୍ଚ ହେଲାଣି । ତଥାପି ସେମାନେ ମାତିଛନ୍ତି ସୁନା ସଂଗ୍ରହରେ ।

ବେଳେବେଳେ କିନ୍ତୁ ଥର୍ଣ୍ଣଟନ୍, ବକ୍‌କୁ ନେଇ ଶିକାର ସନ୍ଧାନେ ବଣ ଭିତରକୁ ପଶନ୍ତି । ସେତିକିବେଳେ ବକ୍ ଏକ ଅଦ୍ଭୁତ ଉନ୍ମାଦନା ଅନୁଭବ କରେ । ଗୋଡ଼ ହାତ ଛାଟି ସେ କୁଦାମାରେ ବଣ ଭିତରେ । ନଚେତ୍ କ୍ୟାମ୍ପ ପାଖରେ ଥିଲେ ତା'କୁ ବଡ଼ ଅବଶ ଲାଗେ । ଶୋଇ ଶୋଇ କ'ଣ କରିବ ସେ ? କେତେ ଶୋଇବ ?

କ୍ୟାମ୍ପ୍ ପାଖରେ ନିଆଁ ଦିକି ଦିକି ହୋଇ ଜଳୁଥାଏ । ଶୋଇରହି ବକ୍ ସେ ନିଆଁକୁ ଚାହେଁ । ନିଆଁର ଶିଖା ତା' ଆଖିରେ ପରଦାଭଳି ହଲ୍‌ଚଲ୍ ହୁଏ । ସେଇ ପରଦାରେ ତାକୁ ବଣୁଆ, ବାଳୁବାଳୁଆ ଆଦିମ ମଣିଷ ଦେଖାଯାଏ । ସେ ମଣିଷ କେତେବେଳେ ଶାନ୍ତ ତ କେତେବେଳେ କ୍ରୁଦ୍ଧ । କେତେବେଳେ ଉଦାସ । ପୁଣି ବ୍ୟଗ୍ର । ପୁଣି କେତେବେଳେ ସେ ଦେଖେ, ଲୋମଶ ଆଦିମ ମଣିଷଟା ଗୋଟାଏ ବିଶାଳ ଗଛର କେନାରେ ଆଉଜି ଶୋଇଚି । ସେଇ ଗଛତଳେ ଜଗିଲାଭଳି ଶୋଇଚି ତା'ରିଭଳି ଗୋଟେ ଜନ୍ତୁ । ଠିକ୍ ତା'ଭଳି । ସେ ନିଜେ ନୁହେଁ ତ ସେ ଜନ୍ତୁଟା ? ଦେଖିବାକୁ ତା'ରିଭଳି । ବଡ଼ ସନ୍ଦେହ ହୁଏ ବକ୍‌ର ।

ହଠାତ୍ ସେ ଗୋଟାଏ ଡାକରା ଶୁଣେ । ବିଳାପର ଡାକରା । ଛାତିଚିରି ସେ ସ୍ୱର ଯେମିତି ତା'ଭିତରେ ପଶିଯାଏ । ତା'କୁ ଜଣାପଡ଼େ କେହି ଜଣେ ଦୂରରେ ଥାଇ କରୁଣ ସ୍ୱରରେ ତାକୁ ଡାକୁଚି । ଧଡ଼ପଡ଼ ହୋଇ ସେ ଉଠିପଡ଼େ । ସ୍ୱର ଆସୁଥିବା ଦିଗରେ ଲକ୍ଷ୍ୟକରି ଧାଏଁ । ଡେରାଠାରୁ ଦୂରକୁ ଯାଇ କିଏ ଡାକୁଚି ବୋଲି ଜାଣିବାକୁ ଚେଷ୍ଟାକରେ । ଏଠୁ ସେଠିକି ଧାଏଁ । କିନ୍ତୁ ସବୁ ନିରର୍ଥକ । କିଏ କେଉଁଠୁ ଡାକୁଚି ବୋଲି ସେ ଟେର୍ ପାଏନା ।

ଦିନେ ଗଭୀର ରାତ୍ରିରେ ହଠାତ୍ ବକ୍‌ର ନିଦ ଭାଙ୍ଗିଗଲା । କ୍ୟାମ୍ପ୍ ଭିତରେ ସମସ୍ତେ ନିଘୋଡ଼ ନିଦରେ । ମନ୍ଦ ମନ୍ଦ ହୋଇ ଜଳୁଚି ନିଆଁ । ପୁଣି ସେଇ ଛାତିଚିରା କରୁଣ ବିଳାପ ଶୁଭିଲା । ନିଦ ଭାଙ୍ଗିବା ମାତ୍ରେ ଧଡ଼୍‌କରି ଉଠି ଠିଆହେଲା ବକ୍ । ଗଭୀର ସୁଷୁପ୍ତିରୁ ଚେଙ୍କାମାରି କିଏ ଯେମିତି ତାକୁ ଉଠେଇ ଦେଇଚି । ସେ ଆଉ ସମ୍ଭାଳି ପାରିଲାନି । କୁଦାମାରି ବାହାରି ଆସିଲା ଡେରା ଭିତରୁ । ବାହାରେ ତୋଫା ଜହ୍ନ



Digitized by srujanika@gmail.com

ଜହ୍ନ ଆଲୁଅ । କେଉଁଠୁ ଦୂରରୁ ଭାସି ଆସୁଚି ସେ କରୁଣ ବିଳାପ ? ସେଇ ଆଡ଼କୁ ଲକ୍ଷ୍ୟକରି ସେ ଧାଇଁବାକୁ ଲାଗିଲା । ସେ ମନେକରୁଥାଏ ବିନା ପରିଶ୍ରମରେ ଯେମିତି ଦଉଡୁଚି । ଗୋଡ଼ ତଳେ ଲାଗୁ ନାହିଁ । ଏଇଭଳି ମାଇଲ୍ ମାଇଲ୍ ସେ ଦଉଡ଼ିବାକୁ ଲାଗିଲା । କାହିଁକି କେଜାଣି ଗୋଟାଏ ଜାଗାରେ ତା'ର ଗୋଡ଼ ସ୍ଥିର ହୋଇଗଲା । ଆଗରେ ଏକ ଖୋଲା ପ୍ରାନ୍ତର । ସେପଟେ ଜହ୍ନ । ଗଛ ଉହାଡ଼ରେ ଏଣିକି ଧୀରେ ଧୀରେ ସେ ଆଗକୁ ଚାଲିଲା । ସାବଧାନ ରହିବା ଦରକାର । କିଏ ଜାଣେ କେଉଁ ବିପଦ ଅଛି ଅନ୍ତରାଳରେ । ବୁଦା ଆଢୁଆଳରେ ଥାଇ ବକ୍ ଦେଖିଲା, ଗୋଟାଏ ପତଳା ବଣୁଆକୁକୁର ତଳେ ବସି ଆଗ ଗୋଡ଼ ଦୁଇଟାରେ ଢିରାଦେଇ ଉପରକୁ ଚାହିଁଚି । ତା'ର ନାକଟା ନିର୍ଦ୍ଦିଷ୍ଟ ହୋଇ ରହିଚି ଆକାଶ ଆଡ଼କୁ ।

ବଣ କୁକୁରଟା ହଠାତ୍ ବକ୍‌ର ବାସ୍ନା ବାରିପାରିଲା ।

ବକ୍ ଯେତେବେଳେ ବୁଦା ଉହାଡ଼ରୁ ଖୋଲା ଜାଗାକୁ ଆସିଲା, ତାର ଠାଣିରେ ଥିଲା ଏକ ପୁରୁଷୋଚିତ ଆଭିଜାତ୍ୟ । ଛାତି ଉଗୁଳି ରହିଥିଲା ଆଗକୁ । ଲାଞ୍ଜଟା ଠିଆହୋଇ ରହିଥିଲା ଉତ୍ତେଜନାରେ । ସେ ଯେମିତି କହୁଥିଲା ''ମୁଁ ବନ୍ଧୁତା ଚାହେଁ, କିନ୍ତୁ ମୁଁ କାହାଠାରୁ ନ୍ୟୁନ ନୁହେଁ ।''

ବଣ କୁକୁରଟା ଯେମିତି ବକ୍‌କୁ ଦେଖିଚି ଲାଞ୍ଜ ଜାକି ବଣ ଭିତରକୁ ଧାଇଁଲା । ସେ ଧାଇଁବା କାହାକୁ ଛିଗୁଲେଇ ଡାକିବା ଭଳି ଧାଇଁବା, ମାତ୍ର ପଳାୟନ ନୁହେଁ । ବକ୍ ମଧ ହେଳା କଲାନି । ଧାଇଁଲା ତା' ପଛେ ପଛେ । ମୁହଁ କୁଞ୍ଚେଇ, ଦାନ୍ତ ଲେଫେଡ଼ି ବଣ କୁକୁରଟା ଖିଙ୍କାରି ହୋଇ ଚକ୍‌କର କାଟିଲା । ମାତ୍ର ବକ୍ ତା' ଉପରେ ଆକ୍ରମଣ କଲା ନାହିଁ । ଓଲଟି ଘେରାକାଟି ବନ୍ଧୁତା ଠାଣିରେ ଚାହିଁଲା । ବଣ କୁକୁରଟାର ମନରୁ ସନ୍ଦେହ ଯାଉ ନ ଥାଏ । ପୁଣି ଥରେ ସେ ତୀରଭଳି ଧାଇଁବାକୁ ଲାଗିଲା ଆଗକୁ । ବକ୍ ମଧ ପଛରେ ପଡ଼ିବା ଜନ୍ତୁ ନୁହେଁ । ସେ ବି ଦଉଡ଼ିଲା । ବଣ କୁକୁରଟାର ଓଜନଠାରୁ ବକ୍‌ର ଓଜନ ତିନି ଗୁଣ ଅଧିକ । ଠିଆ ହେଲେ ବକ୍‌ର ଛାତିଯାଏଁ ହେବ ସେ । କିନ୍ତୁ ବକ୍ ଆକ୍ରମଣ କରୁ ନ ଥାଏ କି ପଳେଇ ଯାଉ ନ ଥାଏ । ଧୀରେ ଧୀରେ ବଣ କୁକୁରଟିର ବିଶ୍ୱାସ ଜନ୍ମିଲା । ସେ ସ୍ଥିର ହୋଇ ଠିଆ ହେଲା ।

ଏଥର ବକ୍ ଆଗେଇ ଆସିଲା । ସେମାନେ ପରସ୍ପର ନାକ ଛୁଆଁଛୁଇଁ ହେଲେ । ତାପରେ ଦୁଇ ଜଣଙ୍କ ଭିତରେ ବନ୍ଧୁତା ହେଲା ଏବଂ ସେମାନେ ଦଉଡ଼ା ଦଉଡ଼ି କରି ଖେଳିବା ଆରମ୍ଭ କରିଦେଲେ ।



Digitized by srujanika@gmail.com

କିଛି ସମୟ ପରେ ବଣକୁକୁରଟା ଆଗକୁ ଦଉଡ଼ିବାକୁ ଲାଗିଲା । ସେ ଚାହୁଁଥିଲା ବକ୍ ବି ତା' ପଛେ ପଛେ ଦଉଡ଼ି ଦଉଡ଼ି ଆସୁ । ତା' ଇସାରାରେ ବକ୍ ଏକ ଅଦ୍ଭୁତ ଉତ୍ସାହ ଅନୁଭବ କଲା । ମୋହଗ୍ରସ୍ତ ହେବାପରି ସେ ମାଇଲ୍ ମାଇଲ୍ ତା'ପଛରେ ଦଉଡ଼ିଲା । ମାଇଲ୍ ମାଇଲ୍ ବ୍ୟାପି ଘନ ଜଙ୍ଗଲ ପାରହେଲା ସେ ।

ବକ୍ ଆନନ୍ଦରେ ବିଭୋର ହୋଇ ପଡୁଥିଲା । ତାକୁ ଖୁସିଲାଗୁଥିଲା ଯେ ଏତେ ଦିନକେ ସେ ଆଦିମ ଡାକରାକୁ ବୁଝିପାରିଛି । ଜଙ୍ଗଲର ଡାକ, ତା' ଭିତରର ଆଦିମ ପରିଚୟ ସହିତ ଏକାକାର ହୋଇଛି । ଜଣେ ଭାଇ ସହିତ କାନ୍ଧକୁ କାନ୍ଧ ମିଳାଇ ସେ ସେଇ ଦିଗକୁ ଧାଇଁବାରେ ଲାଗିଚି । ଜଙ୍ଗଲର ଡାକ ବକ୍ ଭିତରେ ଆଣି ଦେଇଥିଲା ଏକ ଅନନୁଭୂତ ଶିହରଣ । ସେଇ ଆଡ଼କୁ ଧାଉଁଥିଲା ସେ ଅହରହ ।

ବକ୍ ଅନୁଭବ କରୁଥିଲା, ଅତୀତରେ ସେ ଏମିତି ଅନେକ ଥର ଧାଇଁଛି । ଜନ୍ମ ଜନ୍ମ ଧରି ଏଇ ଧାଇଁବାର ଦୁର୍ବାର ଆକର୍ଷଣ ସେ ଅନୁଭବ କରିଛି ନିଜ ଭିତରେ । କିନ୍ତୁ କାହିଁକି ? କାହିଁକି ଏ ଆକର୍ଷଣ ?

ଦଉଡ଼ି ଯାଉ ଯାଉ କିଛି ସମୟପରେ ସେ ଦୁହେଁ ପାଣି ପିଇବାପାଇଁ ଗୋଟିଏ ଝରଣା କୂଳରେ ଅଟକି ଗଲେ । ପାଣି ପିଉ ପିଉ ଟିକେ ଅନ୍ୟମନସ୍କ ହେଲା ଭଳି ଠିଆ ହେଲା ବକ୍ । ହଠାତ୍ ତା'ର ମନେ ପଡ଼ିଗଲା ଥର୍ଣ୍ଣଟନ୍‌ଙ୍କ କଥା । ବଡ଼ ବିଚଳିତ ବୋଧ କଲା ସେ । କିଛି ସମୟ ବସି ରହିଲା ସେଠି । ଏତିକିବେଳେ ବଣକୁକୁରଟା ଆଗକୁ ଆଗେଇବାକୁ ଲାଗିଲା । ବକ୍ କିନ୍ତୁ ନିରବ, ନିଥର । ପାଦ ଚଳୁ ନ ଥାଏ ତା'ର । କିଛି ବୁଝି ନ ପାରି ବଣ କୁକୁର ଲେଉଟିଲା । ବକ୍‌କୁ ଶୁଂଘିଲା । ଉସୁକେଇଲା ତା'କୁ ଉଠି ଦଉଡ଼ିବାକୁ । ବକ୍ କିନ୍ତୁ ଆଉ ଆଗେଇବାକୁ ନାରାଜ୍ । ଆଗକୁ ଦଉଡ଼ିବାକୁ ବଣକୁକୁର ବକ୍‌କୁ ବାରମ୍ବାର ଇସାରା ଦେଲା । ହେଲେ ସବୁ ନିଷ୍ଫଳ । ଓଲଟି ବକ୍ ବୁଲିପଡ଼ି ବିପରୀତ ଦିଗରେ ଦଉଡ଼ିବାକୁ ଆରମ୍ଭ କଲା ।

ବଣକୁକୁର ବି ଏଥର ବକ୍‌ର ପିଛା ଧରିଲା । ଦୁହେଁ ପ୍ରାୟ ଏକ ଘଣ୍ଟାକାଳ ଦଉଡ଼ି ଦଉଡ଼ି ପଛକୁ ଫେରୁଥିଲେ । ମଝିରେ ମଝିରେ ବଣ କୁକୁର ବିରକ୍ତ ହେବାଭଳି ଟିକେ ମୃଦୁ ଗୁଞ୍ଜରଣ କରୁଥାଏ । ଠିଆ ହୋଇଯାଉଥାଏ ମୁହୂର୍ତ୍ତେ । ବକ୍ କିନ୍ତୁ ଅଟକିବାକୁ ନାରାଜ୍ ।

ହଠାତ୍ ଗୋଟାଏ ଜାଗାରେ ବସି ପଡ଼ିଲା ବଣକୁକୁର । ପଛମାଡ଼ି ଆଗଗୋଡ଼ ଦୁଇଟାକୁ ଢିରା ଦେଇ ଆକାଶ ଆଡ଼କୁ ନାକ ରଖି ସେ ଗୋଟାଏ ରଡ଼ି ଛାଡ଼ିଲା ।



Digitized by srujanika@gmail.com

ସେଇ ଆଦିମ କରୁଣ ବିଳାପର ସ୍ୱର । ଚଉଦିଗ ଚମକିଗଲା ସେ ଡାକରେ । ବକ୍ କିନ୍ତୁ ଫେରୁଥାଏ ଘରମୁହାଁ । ପାଦ ତା'ର ଅସ୍ଥିର । କ୍ୟାମ୍ପ ଆଡ଼କୁ କୁଦାମାରି ଧାଉଁଥାଏ ସେ ପ୍ରାଣେପଣେ । ବଣକୁକୁରର ବିଳାପସ୍ୱର ଧୀରେ ଧୀରେ ତା'କୁ କ୍ଷୀଣରୁ କ୍ଷୀଣତର ମନେହେଉଥିଲା ।

ଶେଷକୁ ସେ ସ୍ୱର ଆଉ ଶୁଭିଲା ନାହିଁ । ଗଛପତ୍ରର ଗହଳ ଭିତରେ କୁଆଡ଼େ ମିଳେଇ ଗଲା । ବକ୍ କ୍ୟାମ୍ପକୁ ଫେରିଲା ।

ସେତେବେଳକୁ ସକାଳର ଆଲୁଅ ଖେଳି ଆସୁଥାଏ ଧୀରେ ଧୀରେ । ଅନ୍ୟ କୁକୁରମାନେ ବି ଶୋଇଥାଆନ୍ତି ଚୁପ୍‌ଚାପ୍ । ପ୍ରାୟ ଦୁଇଦିନ ଦୁଇ ରାତି ବକ୍ କ୍ୟାମ୍ପଛାଡ଼ି ଆଉ କୁଆଡ଼େ ଗଲା ନାହିଁ । ମୁହୂର୍ତ୍ତକପାଇଁ ଥର୍ଣ୍ଣଟନଙ୍କ ପାଖ ଛାଡ଼ିଲା ନାହିଁ ସେ । ସବୁବେଳେ ପାଖେ ପାଖେ ଛାଇପରି ରହିଲା । ତଥାପି ଏକ ଅପୂର୍ବ ଜାଗରଣ ସେ ଅନୁଭବ କରୁଥାଏ ନିଜ ଭିତରେ । କର୍ତ୍ତବ୍ୟର ପରିଧିକୁ ଭେଦକରି କେଉଁ ଅଜଣାଡାକର ଆହ୍ୱାନ ବେଳେବେଳେ ନିର୍ଜନତାର ସୁଯୋଗ ନେଇ ପଶିଆସୁଥାଏ ତା' ଭିତରକୁ ।

ପୁଣି ଦିନେ, ବକ୍ ନିଜ ଭିତରେ ସେଇ ଅଜଣାଡାକର ଏକ ଦୁର୍ବାର ଆକର୍ଷଣ ଅନୁଭବ କଲା । ତା'ର ମନେହେଲା ଏ କ୍ୟାମ୍ପ ଯେମିତି ତା'ର ଅପରିଚିତ । ଜଙ୍ଗଲ ହିଁ ତା'ର ପ୍ରିୟ ପରିଚିତ ସ୍ଥାନ । ଦୂରରୁ ଭାସି ଆସୁଥିବା ସେ ସ୍ୱର ହିଁ ତା'ର ଚିରପରିଚିତ ସ୍ୱର । ତା' ନିଜର ସ୍ୱର । ଅନ୍ତରର ବିଳାପଧ୍ୱନି ।

କ୍ୟାମ୍ପ ଛାଡ଼ି ଜଙ୍ଗଲ ଭିତରେ ଏକା ଏକା ବୁଲିବାକୁ ତା'କୁ ଏଣିକି ଭଲ ଲାଗୁଥିଲା । ଟିକିଏ ସୁଯୋଗ ପାଇଲେ ସେ ଧାଇଁଯାଉଥିଲା ବଣ ଭିତରକୁ । ସେଇଠି ବୁଲୁଥିଲା, ଖେଳୁଥିଲା । ଥରେ ଥରେ ସେ ସାରା ରାତିଯାଇ ବଣରେ ବୁଲିଲା । ବେଳେବେଳେ ବି ବଣରେ ଶୋଇ ରାତି କଟେଇଲା । କ୍ୟାମ୍ପଛାଡ଼ି ଲଗାତର ଦିନେ ଦୁଇଦିନ ବି ସେ ବଣ ଭିତରେ ରହିବାକୁ ଆରମ୍ଭ କଲା । ଅହରହ ବୁଲିଲା ଜଙ୍ଗଲ ଭିତରେ । ଭୋକ ଲାଗିଲେ ନିଜେ ଶିକାର କରି ନିଜର ଖାଦ୍ୟ ଯୋଗାଡ଼ କଲା । ହିଂସ୍ର ଜନ୍ତୁପରି ଛକିଛକି ଯାଇ ବଣୁଆ ଜୀବଙ୍କୁ ମାରି ଖାଇଲା ।

ଏସବୁ ଖୁବ୍ ଭଲ ଲାଗୁଥାଏ ତାକୁ । ସେ ଏକ ଅନନୁଭୂତ ଆନନ୍ଦରେ ଶିହରି ଉଠୁଥାଏ । ତଥାପି ଗୋଟାଏ ଅଭାବବୋଧରେ ଘାଣ୍ଟି ହେଉଥାଏ ମନ । ସବୁବେଳେ ସେଇ ବଣୁଆ କୁକୁରକୁ ମନେ ମନେ ଖୋଜୁଥାଏ । କେଉଁଠି ଆସି ମିଳିଯାଆନ୍ତା ହେଲେ । ବଣୁଆ ସାଥୀର ଅଭାବ ଖୁବ୍ ଘାରୁଥାଏ ବକ୍‌କୁ ।



Digitized by srujanika@gmail.com

କ୍ୟାମ୍ପ୍ ପାଖରେ ରହୁଥିବା ବକ୍ ଏବଂ ବଣ ଭିତରେ ଘୂରିବୁଲୁଥିବା ବକ୍ ଭିତରେ ଆକାଶ ପାତାଳ ଫରକ। କ୍ୟାମ୍ପରେ ଥିଲାବେଳେ ସେ ଯେତିକି ଭଦ୍ର, ଯେତିକି ଅନୁଗତ, ଜଙ୍ଗଲ ଭିତରେ ଛେପିଲାବେଳେ ସେ ସେତିକି ହିଂସ୍ର ଏବଂ ଜାଙ୍ଗଲିକ ଜଣାପଡୁଥାଏ। କେହି କହିବ ନାହିଁ ଯେ, ଏ ସେଇ ଏକା କୁକୁର।

ଧୀରେ ଧୀରେ ବଣୁଆ ଜୀବନ ସହ ବକ୍ ପୂରାପୂରି ଅଭ୍ୟସ୍ତ ହୋଇପଡ଼ିଲା। ନିଜ ଭିତରର ଏ ଅଦ୍ଭୁତ ପରିବର୍ତ୍ତନ କଥା ଭାବି ସେ ନିଜେ ବଡ଼ ଆଶ୍ଚର୍ଯ୍ୟ ହେଉଥିଲା। ଶିକାର କରିବା, ଜୀବଜନ୍ତୁଙ୍କୁ ଠଉରେଇବା, ବିପଦ ଆସିବା ଆଗରୁ ସେ ସମ୍ପର୍କରେ ସତର୍କହେବା ଭଳି କେତେକ ଆରଣ୍ୟକ ପ୍ରବୃତ୍ତି ତା' ଭିତରେ ବେଶ୍ ସ୍ୱାଭାବିକ ହୋଇ ସାରିଥିଲା ଏ ଭିତରେ।

ଏସବୁ କାର୍ଯ୍ୟରେ ସେ ଏତେ ପ୍ରବୀଣ ହୋଇଯାଇଥିଲା ଯେ ସ୍ପଷ୍ଟ ଦିବାଲୋକରେ ହ୍ରଦ ପାଣିରୁ ମାଛ ଅନାୟାସରେ ଶିକାର କରିପାରୁଥିଲା। ବରଫହରିଣ ପଲକୁ ତଡ଼ି ତାଙ୍କ ଭିତରୁ କାହାକୁ ହେଲେ ସେ କଳେବଳେ ଝାମ୍ପି ଆଣୁଥିଲା। ସେଥିରେ ଦିନ ଦିନ ଲାଗିଗଲେ ବି ସେ କ୍ଲାନ୍ତି ଅନୁଭବ କରୁ ନ ଥିଲା। ଓଲଟି ଅଧିକ ଉନ୍ମାଦନା ଅନୁଭବ କରୁଥିଲା। ଅନ୍ଧାରରେ ଛାଇପରି, ଆଲୁଅରେ ତୀରପରି ତା'ର ଗତିବିଧି ବେଶ୍ ପ୍ରଚ୍ଛନ୍ନ ଏବଂ କ୍ଷିପ୍ର ପାଲଟି ଯାଇଥିଲା ଏଇ କେତେଦିନ ଭିତରେ।

କିନ୍ତୁ ଥର୍ଣ୍ଣଟନ୍‌ଙ୍କ କ୍ୟାମ୍ପ୍ ଓ ଥର୍ଣ୍ଣଟନ୍‌ଙ୍କୁ ସେ ଛାଡ଼ି ପାରୁ ନ ଥିଲା ମୋଟେ। କିଛିଦିନ ବୁଲିବା ପରେ ପୁଣି ଫେରି ଆସୁଥିଲା ଡେରା ପାଖକୁ। ସେଠି ବୁଲୁଥିବା ଥର୍ଣ୍ଣଟନ୍‌ଙ୍କ ସ୍ଲେଜ୍‌ଗାଡ଼ିର ଅନ୍ୟ କୁକୁରମାନଙ୍କ ସହ ସେ ପୁଣି ଖେଳକୁଦ ଆରମ୍ଭ କରିଦେଉଥିଲା।

ଏହିପରି ଫେରିବା, ଯିବା ଭିତରେ ବକ୍ ଦିନେ କ୍ୟାମ୍ପର ତିନି ମାଇଲ୍ ଦୂରରେ ଏକ ଅଜଣା ଗନ୍ଧର ସୁରାକ ପାଇଲା। ସେ ଗନ୍ଧରେ ସେ ବଡ଼ ବିଚଳିତ ହୋଇପଡ଼ିଲା। ନାକକୁ ତୀକ୍ଷ୍ଣ କରି ସେ ଥରକୁ ଥର ଗନ୍ଧ ବାରିଲା। ଗନ୍ଧ ବାରି ବାରି କ୍ୟାମ୍ପଆଡ଼କୁ ଫେରିବାକୁ ଆରମ୍ଭ କଲା। କିଏ ଯେମିତି ତା' ଭିତରେ ହାତୁଡ଼ି ପିଟୁଥାଏ। କହୁଥାଏ ସତର୍କ ହୋଇ ଆଗକୁ ଯା'! ଆଗରେ ବିପଦ!

ବକ୍ ସତର୍କ ହୋଇ ଚାଲିଲା। ଗନ୍ଧ ବାରି ସେ ପହଞ୍ଚିଲା ଗୋଟାଏ ବୁଦା ପାଖରେ। ହେଲେ ଏ କ'ଣ ? ସେଇଠି ଟଳି ପଡ଼ିଚି ତାଙ୍କରି ଦଳର କୁକୁର 'ନିଗ୍'। ଦେହରେ ତା'ର ଗୋଟାଏ ବିରାଟ ଶର ଫୁଟି ଯାଇଚି। ଲୋମ ଟାଙ୍କୁରି ଉଠିଲା ବକ୍‌ର।



Digitized by srujanika@gmail.com

କ୍ୟାମ୍ପ ଜାଗାଟି ଯେତେ ପାଖ ହେଉଥାଏ, ବକ୍ ସେତେସେତେ ଗୋଟାଏ ଅଚିହ୍ନା ଗୁଞ୍ଜରଣ ଧ୍ୱନି ପାଉଥାଏ ଶୁଣିବାକୁ । ଦଳେ ଲୋକ ଯେମିତି ରାହାଧରି କ'ଣ ଗାଉଚନ୍ତି ସମସ୍ୱରରେ ।

କ୍ୟାମ୍ପ ପାଖକୁ ଯାଇ ଟିକେ ଦୂରରୁ ବକ୍ ଦେଖିଲା, ସେ ଲୋକଗୁଡ଼ାକ ଲୋହିତ ଭାରତୀୟ 'ୟିହାତି' ଗୋଷ୍ଠୀର । ବଡ଼ ହିଂସ୍ର ଏବଂ ଅଭଦ୍ର । କ୍ୟାମ୍ପଟିକୁ ଅଧିକାର କରିନେଇ ସେମାନେ ବିଜୟ ଉଲ୍ଲାସରେ ମାତିଚନ୍ତି । ସେଇଥିପାଇଁ ହସଖୁସି ଗୀତ ନାଚ ଚାଲିଚି ।

ବିଜୁଳି ଚମକିଲା ପରି ବକ୍ ଭିତରେ ଗୋଟାଏ ଶିହରଣ ଖେଳିଗଲା । ଘଡ଼ଘଡ଼ି ଶବ୍ଦପରି ଗୋଟାଏ ହିଂସ୍ର ଉଦ୍‌ବେଳନ ଉଠି ଆସିଲା ତା' ଭିତରୁ । ଜଙ୍ଗଲୀ ଜାନୁଆର ପରି ସେ ଝାମ୍ପିପଡ଼ିଲା ମଣିଷଗୁଡ଼ାଙ୍କ ଉପରକୁ ।

ୟିହାତିମାନେ ଏକ ଭୀଷଣ ଗର୍ଜନ କେବଳ ଶୁଣିଲେ । ଦେଖିଲେ ଗୋଟାଏ ହିଂସ୍ରଜନ୍ତୁ ତାଙ୍କ ଦଳ ଭିତରେ ପଶି ସମସ୍ତଙ୍କୁ ଖିନ୍‌ଭିନ୍ କରିପକାଉଚି । ସେ କିଏ, କେଉଁଠୁ ଆସିଲା, ଏସବୁ ଭାବିବାପାଇଁ କାହାକୁ ବି ତର ମିଳିଲାନି । ଜଣେ କୁଶଳୀ ଯୋଦ୍ଧାର ତରବାରି ପରି ବକ୍ ସାଇଁ ସାଇଁ ମାଡ଼ିଯାଉଥାଏ ଏପଟରୁ ସେପଟକୁ ।

ପ୍ରଥମେ ଦଳର ଦଳପତିଙ୍କୁ ମାଡ଼ିବସି ସେ ତାଙ୍କର ତଣ୍ଟି କଣା କରିଦେଲା । ତା'ପରେ ଆଉ ଗୋଟାଏ ମଣିଷକୁ । ତା'ପରେ ଆଉ ଗୋଟାଏ । କାହାକୁ ଭାବିବାକୁ ବି ତର ନାହିଁ । ଅସ୍ତ୍ର ବାହାର କରିବାକୁ ବେଳ ନାହିଁ । କ'ଣ ଘଟୁଚି ବୋଲି ଜାଣିବା ପୂର୍ବରୁ ବକ୍ ପାଞ୍ଚଜଣ ୟିହାତିଙ୍କୁ ମାରି ଧରାଶାୟୀ କରିଦେଲା ।

ଏ ଭିତରେ ସେମାନେ ଧନୁଶର ଧରି ପ୍ରସ୍ତୁତ ହୋଇଗଲେ । ସମସ୍ତେ ଘେରିଯାଇ ବକ୍ ଉପରେ ତୀର ପ୍ରହାର କରିବାକୁ ଲାଗିଲେ । ବକ୍ କିନ୍ତୁ ବିଜୁଳି ବେଗରେ କ୍ଷେପି ଯାଉଥାଏ ସେମାନଙ୍କ ଭିତରେ । ୟିହାତିମାନେ ଏପରି ଖେଳେଇ ହୋଇ ରହିଥିଲେ ଯେ ସେମାନଙ୍କ ଶର, ବକ୍ ଦେହରେ ବାଜିବ କ'ଣ ଓଲଟି ନିଜ ଲୋକଙ୍କୁ ଭୂଲୁଣ୍ଠିତ କରୁଥିଲା । ବକ୍ କିନ୍ତୁ ଛାଡ଼ିବାକୁ ନାରାଜ୍ । ଜଣକ ପରେ ଜଣକୁ ଝାମ୍ପମାରି ସେ ତଳେ ପକାଇ ଦେଉଥିଲା ଏବଂ ତଣ୍ଟିକଣା କରି ଜୀବନ ନେଇ ଯାଉଥିଲା । ବେଳକୁ ବେଳ ଶକ୍ତିଶାଳୀ ହେବାପରି ରଡ଼ିଛାଡ଼ି ଭୀମବିକ୍ରମରେ ବକ୍ ତା'ର ଯୁଦ୍ଧ ଅବ୍ୟାହତ ରଖିଥିଲା ।

ଏତିକିବେଳେ କେହି ଜଣେ ୟିହାତି ପାଟିକରି ଉଠିଲେ, ''ଏଇଟା ଜନ୍ତୁ ନୁହେଁରେ, ଗୋଟାଏ ସଇତାନ୍ ଭୂତ । ନ ହେଲେ ଗୋଟାଏ ବି ଶର ତା' ଦେହରେ



Digitized by srujanika@gmail.com



ପ୍ରତିଶୋଧ, ଖାଲି ପ୍ରତିଶୋଧ



Digitized by srujanika@gmail.com

ବାଜନ୍ତା ନାହିଁ କେମିତି ? ଜୀବନ ଧରି ପଳେଇ ଯାଅ, ପଳେଇ ଯାଅ । ନଚେତ୍ ଏ ଭୂତକୁକୁର ଆମ ସମସ୍ତଙ୍କୁ ମାରିଦେବ ।''

ଏତକ ଯେମିତି ଶୁଣିଛନ୍ତି, ଦଳପତି ହରେଇଥିବା ଯିହାତି ଦଳ ପ୍ରାଣମୂର୍ଚ୍ଛାହୋଇ ଏଣେତେଣେ ଦଉଡ଼ିବାକୁ ଲାଗିଲେ । ଦଉଡ଼ିଯାଇ ଜଙ୍ଗଲ ଭିତରେ ଲୁଚିଯିବାକୁ ଚେଷ୍ଟା କଲେ । ବକ୍ କିନ୍ତୁ ଗୋଡ଼େଇ ଗୋଡ଼େଇ ଆଉ କେତେଜଣଙ୍କୁ ଭୂଇଁରେ ଲୋଟେଇ ଦେଲା ।

ଶେଷକୁ ସେ ଫେରି ଆସିଲା କ୍ୟାମ୍ପ ପାଖକୁ ।

ସେଠାରୁ ପରାସ୍ତ ହୋଇ ଧାଇଁ ପଳେଇଥିବା ଯିହାତିମାନେ ଆଉ ପଛକୁ ଫେରି ନ ଥିଲେ । ପ୍ରାୟ ସାତଦିନ ପରେ ଯାଇ ସେମାନଙ୍କ ଭିତରୁ ବଞ୍ଚିଥିବା କେତେଜଣ ନିଜର ଆଡ୍‌ଡାରେ ଏକତ୍ରିତ ହେଲେ । ଦଳ ଭିତରୁ ଏତେ ଲୋକଙ୍କୁ ଯେ ଗୋଟାଏ କୁକୁର ମାରି ଦେଇଛି ଏକଥା ସେମାନେ ବିଶ୍ୱାସ କରିପାରୁ ନ ଥିଲେ । କୁକୁର ରୂପରେ ସେଇଟା ନିଶ୍ଚୟ ଗୋଟାଏ ସଇତାନୀ ଭୂତ ।

କ୍ୟାମ୍ପ ଭିତରେ ବକ୍ ଦେଖିଲା 'ପେଟେ' କମ୍ବଳ ଭିତରେ ଗୁଡ଼େଇ ହୋଇ ମରିପଡ଼ିଚନ୍ତି । କେହି ବୋଧେ ତାଙ୍କୁ ମାଡ଼ିବସି ତଣ୍ଟିଚିପି ହତ୍ୟା କରିଛି ।

ହେଲେ କାହାନ୍ତି ତା'ର ପ୍ରଭୁ ଥର୍ଣ୍ଣଟନ୍ ? ନାକକୁ କୁଞ୍ଚେଇ ବକ୍ ଥର୍ଣ୍ଣଟନ୍‌ଙ୍କର ଗନ୍ଧ ବାରିବାକୁ ଚେଷ୍ଟା କଲା । ଧୀରେ ଧୀରେ ସେ ଗନ୍ଧ ତା' ନାକକୁ ଆସିଲା । ଅନିଶ୍ଚା କରି ସେ ଚାହିଁଲା ସେଇ ଆଡ଼କୁ । ତେଣିକି ଗନ୍ଧବାରି ସେ ଆଶଙ୍କିତ ପାଦରେ ଆଗେଇଲା । ଗନ୍ଧର ଧାର ଭାସି ଆସୁଥିଲା ଝରଣା କୂଳଆଡୁ ।

ଝରଣାକୂଳରେ ପହଞ୍ଚି ବକ୍ ଦେଖିଲା ବେଶ୍ ଚକଡ଼ାଏ ସ୍ଥାନ ଧସ୍ତାଧସ୍ତିଯୋଗୁଁ ଏପଟ ସେପଟ ହେଇଚି । କେତେ ଲୋକଙ୍କର ପାଦଚିହ୍ନ ସେଠି ପଡ଼ିଚି । ଗୋଟାଏ ଛୋଟକାଟର ତାଣ୍ଡବଲୀଳା ସଂଘଟିତ ହୋଇଚି ସେଠି । ଥର୍ଣ୍ଣଟନ୍‌ଙ୍କ ଗନ୍ଧକୁ ବାରି ସେ ଝରଣାଯାଏ ଗଲା । ତେଣିକି ଆଉ କିଛି ଜଣାପଡ଼ିଲାନି ତାକୁ । ଝରଣା ପାଣିର ପ୍ରବହମାନ ଧାରାରେ ଥର୍ଣ୍ଣଟନ୍‌ଙ୍କ ସତ୍ତା କୁଆଡ଼େ ମିଳେଇ ଯାଇଚି ।

ବକ୍, ମୃତ୍ୟୁର ଗନ୍ଧକୁ ବେଶ୍ ବାରିପାରେ । ସେ ଜାଣିଲା ଥର୍ଣ୍ଣଟନ୍ ପ୍ରାଣହରାଇ ପାଣିରେ ଭାସି ଯାଇଛନ୍ତି ।

ସାରାଦିନ ବକ୍ ଝରଣାକୂଳରେ ବସିଲା । ରାତିରେ କ୍ୟାମ୍ପକୁ ଫେରି ଇତସ୍ତତଃ ଘୁରିଲା । ଶୂନ୍ୟତାର ଗୋଟାଏ ଜାଲ ଭିତରେ ସେ ଛନ୍ଦି ହେଉଥାଏ ବେଳକୁବେଳ ।



Digitized by srujanika@gmail.com

ସେ ଶୂନ୍ୟତାର ଅନୁଭୂତି ଠିକ୍ ଭୋକପରି । କିନ୍ତୁ କୌଣସି ଖାଦ୍ୟରେ ସେ ଭୋକ ଥମିବ ନାହିଁ । ଏପଟ ସେପଟ ଘୂରୁଘୂରୁ ସମୟ ସମୟରେ ସେ ଠିଆ ହୋଇ ରହିଲା । ଠିଆ ହୋଇ ସେଠି ପଡ଼ିଥିବା ଯିହାତିମାନଙ୍କର ମଲା ଦେହକୁ ଚାହିଁଲା ।

ସେ ଭାବିଲା ମୋର ପ୍ରଭୁଙ୍କୁ ଏମାନେ ମାରି ଦେଇଛନ୍ତି ସତ କିନ୍ତୁ ମୁଁ ସେମାନଙ୍କୁ ଛାଡ଼ି ନାଇଁ । ଥର୍ଣ୍ଣଟନଙ୍କ ମୃତ୍ୟୁର ଉଚିତ ପ୍ରତିଶୋଧ ନେଇଚି । ସେତିକିବେଳେ ତା' ମନରେ ଗର୍ବ ଆସିଲା । ଘଡ଼ିଏ ବସି ରହି ସେ ଆନମନା ହୋଇ ଚାହିଁଲା ଏଣେ ତେଣେ ।

ସେ ମଣିଷ ଶିକାର କରିଛି । ଜାନୁଆର୍‌ଠାରୁ ଅଧିକ ହିଂସ୍ର ମଣିଷଙ୍କୁ ମାରି ଜୀବନ ନେଇଛି । ପ୍ରଭୁର ପ୍ରତିଶୋଧ ନେଇଛି । ଗର୍ବ ନ କରିବ କାହିଁକି ?

କେତେଦିନ ପରେ ପୁଣି ଗୋଟାଏ ରାତି ଆସିଲା । ପୂର୍ଣ୍ଣିମାର ରାତି । ଚାରିଆଡ଼େ ରଣିଫୁଲ ପରି ଜହ୍ନ ଆଲୁଅ ବିଛାଡ଼ି ପଡ଼ିଲା । ବକ୍ ସବୁଦିନପରି ବସିଥିଲା ଝରଣା କୂଳରେ । ଏଇ ଝରଣାରେ ହିଁ ଲୀନ ହୋଇଯାଇଚି ଥର୍ଣ୍ଣଟନ୍‌ଙ୍କ ଶରୀର ।

ଏତିକିବେଳେ କ'ଣ ଗୋଟାଏ ସ୍ୱର ଶୁଣି ସେ ଉଠିପଡ଼ିଲା । ସେଇ ପୁରୁଣା ଆଦିମ ସ୍ୱରର ଡାକ । ଅନେକ ଦୂରରୁ ଭାସି ଆସୁଚି କ୍ଷୀଣ ଲହରପରି । ସେ ଡାକରେ ଯେମିତି ଭରି ରହିଚି ଏକ ଉଚ୍ଚାଟନକାରୀ ମହକ । ପ୍ରଥମେ ଜଣିକିଆ ଡାକ । ତାପରେ ଏକ ସମବେତ ଡାକ । ବକ୍ ବସି ବସି କାନେଇଲା ସେଇ ଆଡ଼କୁ । କ୍ରମେ କ୍ରମେ ସେ ଡାକ ନିକଟତର ହେଉଥାଏ । ବେଳୁବେଳ ଅଧିକରୁ ଅଧିକ ତୀବ୍ରହୋଇ ଶୁଭୁଥାଏ କାନକୁ ।

ବକ୍ ମନେ ପକାଉଥିଲା । ହଁ ସେ ଜାଣେ । ସେ ଚିହ୍ନେ ଏ ଡାକକୁ । କୋଉଠି ଶୁଣିଚି ସିଏ ବାରମ୍ବାର । ନିଆଁ ଶିଖାର ହଲଚଲ ପରଦା ଉପରେ ଛାଇନିଦର ସ୍ୱପ୍ନପରି ସେ ଅନୁଭବ କରିଚି ସେ କଥା । ଥରେ ନୁହେଁ । ଦୁଇ ଥର ନୁହେଁ । ଅନେକ ଥର ।

ସେତେବେଳେ ଜଙ୍ଗଲ ତାକୁ ଡାକେ । ତା' ଭିତରେ ଚିଆଁ ଲଗାଏ ।

ଯେତେଥର ସେ ଡାକ ଶୁଣିଚି, ବଡ଼ ଆପଣାର ଲାଗିଚି ତା'କୁ । ସମୟ ଯେତେ ଆଗେଇଚି, ସେତେ ଅଧିକ ଆକର୍ଷଣ ସେ ଅନୁଭବ କରିଚି ସେଇ ଆଡ଼କୁ ।

ବକ୍ କିନ୍ତୁ କେବେ ପ୍ରତ୍ୟୁତ୍ତର ଦେଇନି । ଆଜି ଅଦ୍‌ଭୁତ ଭାବେ ନିଜ ଭିତରେ ସେ ଉଦ୍‌ବେଳନ ଅନୁଭବ କରୁଚି । ସେ ପ୍ରତ୍ୟୁତ୍ତର ଦେବ । ପ୍ରତ୍ୟୁତ୍ତର ଦେବା ହିଁ ତା' ପକ୍ଷେ ସ୍ୱାଭାବିକ୍ । ନ ହେଲେ ତା' ଛାତି ଯେମିତି ରୁନ୍ଧି ହୋଇଯିବ ।



Digitized by srujanika@gmail.com

ମଣିଷ ସହିତ ତା'ର ସମସ୍ତ ସମ୍ପର୍କ ଛିନ୍ନ ହୋଇଛି । ଥର୍ଣ୍ଣଟନ୍‌ଙ୍କ ମୃତ୍ୟୁସହ ମଣିଷ ସାଙ୍ଗରେ ବନ୍ଧୁତାର ଶେଷ ଯବନିକା ପଡ଼ିଚି । ତେବେ ଆଉ କ'ଣ ବା ପ୍ରତିବନ୍ଧକ !

ବଣକୁକୁର ଦଳ ନଇନାଳ ପାରିହୋଇ, ଝାଡ଼ ଜଙ୍ଗଲ ଡେଇଁ ବକ୍ ରହୁଥିବା ଉପତ୍ୟକାରେ ଆସି ପହଞ୍ଚି ସାରିଥିଲେ । ଜହ୍ନ ଆଲୁଅରେ ସେମାନେ ଦିଶୁଥିଲେ ବେଶ୍ ଶୁଭ୍ର ଏବଂ ସତେଜ । ଉପତ୍ୟକାର ଖୋଲା ମଇଦାନକୁ ଆସି ସେମାନେ ଠିଆହୋଇଗଲେ ବକ୍‌କୁ ଘେରି । ବକ୍ ଠିଆ ହୋଇଥାଏ ମଝିରେ ନିଶ୍ଚଳ ହୋଇ ।

ବୋଧହୁଏ ବଣକୁକୁର ଦଳ ବକ୍‌ର ବିଶାଳ ଶରୀର ଦେଖି ଟିକେ ଅପ୍ରସ୍ତୁତ ଅନୁଭବ କଲେ । ଥତମତ ହେଲେ । ଏତିକିବେଳେ ଦଳର ସବୁଠାରୁ ସାହସୀ ଏବଂ ବଳୁଆ କୁକୁରଟି ଟିକେ ଆଗେଇ ଆସି ସିଧା କୁଦା ମାରିଲା ବକ୍ ଉପରକୁ । ଗୋଟାଏ ଝଲକ୍‌ରେ ବକ୍ ତା'ର ଉତ୍ତର ଦେଲା । ସେଇ ଥରକର ଆଘାତରେ ଷଣ୍ଢାଭାଙ୍ଗି ନିର୍ଜୀବ ହୋଇ ପଡ଼ିଲା ଆକ୍ରମଣକାରୀ କୁକୁରଟି । ବକ୍ ପୁଣି ନିଶ୍ଚଳ । ତା'ର ଦୃଷ୍ଟି ଘୂରି ବୁଲୁଥାଏ ସମସ୍ତଙ୍କ ଉପରେ । ଆଉ ତିନିଜଣ ଆଗେଇ ଆସିଲେ । ମାତ୍ର ଜଣକ ପରେ ଜଣେ ହଟିଗଲେ ପଛକୁ ଲହୁଲୁହାଣ ହୋଇ ।

ଏଥର କିନ୍ତୁ ସମ୍ପୂର୍ଣ୍ଣ ଦଳଟା ଏକଜୁଟ୍ ହୋଇ ମାଡ଼ି ଆସିଲେ ଆଗକୁ । ଏକ ସମୟରେ ସମସ୍ତେ ଆକ୍ରମଣ ଆରମ୍ଭ କରିଦେଲେ । ବକ୍ ମଧ ଆରମ୍ଭ କରିଦେଲା ପ୍ରତିଆକ୍ରମଣ । ପଛ ଗୋଡ଼ ଦୁଇଟାକୁ ତଳେ ଦୃଢ଼କରି, ମୁହଁ ବୁଲାଇ ତୀକ୍ଷ୍ଣ ତରବାରି ବୁଲାଇବାଭଳି ସେ ଆଘାତ କରିବାକୁ ଲାଗିଲା ଜଣକ ପରେ ଜଣକୁ । ଚକ୍ର ଘୂରିବାପରି ଘୂରି ବୁଲିଲା ସେ । ଏତେ ଜୋର୍‌ରେ ଆକ୍ରମଣକରି ସେ ଘୂରୁଥିଲା ଯେ ମନେହେଉଥିଲା ତା'ର ଯେପରି ଚାରିଆଡ଼କୁ ମୁହଁ । ଗୋଟିଏ ବି ବଣକୁକୁର ତା'କୁ ଆଘାତ କରିବାକୁ ସମର୍ଥ ହେଲେ ନାହିଁ ।

ଧୀରେ ଧୀରେ ପଛେଇ ପଛେଇ ବକ୍ ଗୋଟାଏ ଉଚ୍ଚ କୁଦ ପାଖକୁ ଘୁଞ୍ଚି ଆସିଲା । କୁଦଟା କାନ୍ଥଭଳି ରହିଗଲା ପଛ ପାଖରେ । ପଛପଟଟା ସୁରକ୍ଷିତ ହୋଇଗଲା ପରେ ବକ୍ ସିଂହପରି ଆଗଗୋଡ଼ ପକେଇ ସାମ୍‌ନା କଲା ବଣୁଆକୁକୁରମାନଙ୍କୁ । ଏବେ ତା'ର ତିନିପଟେ ଘେରି ରହିଥିଲେ ସେମାନେ ।

ଅଧଘଣ୍ଟାଏ ଏଇଭଳି ଯୁଦ୍ଧ ଚାଲିବାପରେ ବି ବକ୍ ତା'ର ସଂଘାତ ଜାରି ରଖିଥାଏ । କ୍ରମେ କ୍ରମେ ସମ୍ପୂର୍ଣ୍ଣ ପଛେଇଯାଇ ସେମାନେ ମଣ୍ଡଳାକାରରେ ତିନିପଟୁ ଘେରି ରହିଲେ ବକ୍‌କୁ । ସେଇଠି ଠିଆହୋଇ ନିଜର ଖଣ୍ଡିଆ ଜାଗାକୁ ଚାଟି ଉପଶମ କରିବାକୁ ଚେଷ୍ଟାକଲେ ।



Digitized by srujanika@gmail.com

କେତେ ସମୟପରେ ଗୋଟାଏ ପତଳା ବଣକୁକୁର ବକ୍ ଆଡ଼କୁ ବନ୍ଧୁତାର ଠାଣିରେ ଆଗେଇବାକୁ ଲାଗିଲା । ତା'କୁ ଦେଖୁ ଦେଖୁ ଉଜ୍ଜଳି ଉଠିଲା ବକ୍‌ର ଆଖି । ଆରେ ! ଏଇତ ସେଇ । ଯାହା ସହିତ ବକ୍ ଦିନେ ଘଣ୍ଟା ଘଣ୍ଟା ଧରି ବୁଲିଥିଲା ବଣ ଭିତରେ ପ୍ରମତ୍ତ ହୋଇ । ବଣ କୁକୁରଟା ସାମ୍ନାକୁ ଆସି ଟିକେ ଦାନ୍ତ ନେଫେଡ଼ିଲା । ବକ୍ ବି ପ୍ରତ୍ୟୁତ୍ତର ଦେଲା ଦାନ୍ତ ନେଫେଡ଼ି । ଏବେ ପରସ୍ପର ସେମାନେ ନାକ ଛୁଆଁଛୁଇଁ ହେଲେ ।

ଗୋଟାଏ ଶାନ୍ତ ବାତାବରଣ ଓହ୍ଲେଇ ଆସିଲା ଧୀରେ ଧୀରେ । କିଛି ସମୟପରେ ଦଳ ଭିତରୁ ଗୋଟାଏ ବୁଢ଼ା କୁକୁର ରହି ରହି ଆଗକୁ ଆସିଲା । ବକ୍‌ଠାରୁ ଆଘାତପାଇ ତା'ର ଦେହ ମୁଣ୍ଡ ଖଣ୍ଡିଆଖାବରା ହୋଇଯାଇଥାଏ । ସେ ପାଖକୁ ଆସି ବକ୍ ନାକରେ ନିଜର ନାକ ଛୁଆଇଁଲା । ପ୍ରଥମେ ବକ୍ ଟିକେ ଥତମତ ହେଉଥିଲା । କିନ୍ତୁ ବୁଢ଼ା କୁକୁରର ଆଖି ତା' ଆଖିରେ ପଡ଼ିବାମାତ୍ରେ ତା'କୁ ସବୁକିଛି ସହଜ ମନେହେଲା ।

ଏଥର ବୁଢ଼ାକୁକୁରଟା ବକ୍ ପାଖରେ ବସି ପଡ଼ି, ବେକ ଟେକିଦେଇ ନାକଟାକୁ ଗୋଜେଇ ଦେଲା ଆକାଶ ଆଡ଼କୁ । ଠିକ୍ ଜହ୍ନ ଆଡ଼କୁ ରହିଥିଲା ନାକଟା । ତାପରେ ସେ ଗୋଟାଏ ରଡ଼ି ଛାଡ଼ିଲା । ସେଇ ଆଦିମ ବିଳାପ ସ୍ୱର । ଲହରେଇ ଲହରେଇ ସେ ଡାକ ଯେମିତି ସାରା ବାତାବରଣକୁ ଛାଇଗଲା । ସେଇଠୁ ଉପସ୍ଥିତ ସମସ୍ତ ବଣୁଆ କୁକୁର ରାହାଧରି ଲମ୍ବେଇ ଦେଲେ ଡାକ । ଆଦିମ ଜଙ୍ଗଲର ଧ୍ୱନି ବିଳପି ଉଠିଲା ଚଉଦିଗରେ । ଖୁବ୍ ନିଠେଇ ବକ୍ ଦେଖୁଥାଏ ଏବଂ ଶୁଣୁଥାଏ ସେସବୁ । ସେ ଅନୁଭବ କଲା ତା'ର ଲୋମମୂଳ ଗୁଡ଼ାକ ଠିଆ ଠିଆ । ଏ ଅନୁଭବ ତାର କ୍ରୋଧପ୍ରସୂତ ନୁହେଁ । ଏକ ଅଦ୍‌ଭୁତ ଉତ୍ତେଜନାର ପରିପ୍ରକାଶ ମାତ୍ର । ବଣ କୁକୁରମାନଙ୍କର ସମବେତ ବିଳାପଧ୍ୱନି ଯେମିତି ଖେଳିଯାଉଥିଲା ତା'ର ଶିରାପ୍ରଶିରାରେ ।

ବକ୍ ଆଉ ଅପେକ୍ଷା କରିପାରିଲାନି । ଆଗ ଗୋଡ଼ ଦୁଇଟା ଠେବମାରି ପଛମାଡ଼ି ବସିପଡ଼ିଲା ଆକାଶକୁ ଚାହିଁ । ନାକ ଗୋଜେଇଗଲା ପୂର୍ଣ୍ଣିମାର ଜହ୍ନ ଆଡ଼କୁ । ତା'ପରେ ଅନ୍ୟମାନଙ୍କ ଭଳି ସେ ବି ଲମ୍ବେଇ ଦେଲା ସ୍ୱର । ତା' ଭିତରେ ଏତେଦିନ ଧରି ଛପି ରହିଥିବା- ଆଦିମତାର ଚରମ ଅନୁଭବ ଛିଟିକି ଆସିଲା ପଦାକୁ ଲହଡ଼ିପରେ ଲହଡ଼ି ହୋଇ । ଜଙ୍ଗଲର ଡାକ ସହ ତା' ନିଜର ଡାକ ଏକାକାର ହୋଇଗଲା ।

ଏବେ ବକ୍ ନିଜକୁ ବଡ଼ ସ୍ୱାଭାବିକ ମନେ କଲା । କୁଦକୁ ପଛକରି ବସିଥିବା ସ୍ଥାନରୁ ସେ ବାହାରି ଆସିଲା ଖୋଲା ଅଞ୍ଚଳକୁ । ଅନ୍ୟ ବଣ କୁକୁରମାନେ ତାକୁ



Digitized by srujanika@gmail.com



ଆଦିମ ବିଳାପ ସ୍ୱର



Digitized by srujanika@gmail.com

ଘେରିଯାଇ ସମ୍ଭାଷଣ ଜଣେଇଲେ । କିଏ ନାକ ଛୁଇଁଲା ତ କିଏ ଦାନ୍ତ ନେଫେଡ଼ିଲା । କିଏ ଅଧା ବନ୍ଧୁତା ଅଧା ଅପରିଚିତ ଠାଣିରେ ଆସି ପାଖରେ ଠିଆ ହେଲା । ଛୋଟକାଟିଆ ଗୋଟେ ହୋ'ହଲ୍ଲା ଚାଲିଲା ସେଠି ।

ଏତିକିବେଳେ ଦଳର ପୁରୁଣା କୁକୁରମାନେ ବଣୁଆ ଶବ୍ଦକରି ଜଙ୍ଗଲ ଆଡ଼କୁ ଧାଇଁବାରେ ଲାଗିଲେ । ଦଳର ଅନ୍ୟ କୁକୁରମାନେ ମଧ୍ୟ ଗୋଟି ଗୋଟି ହୋଇ ପିଛା ଧରିଲେ । ବକ୍ ମଧ୍ୟ ସେମାନଙ୍କ ସାଙ୍ଗରେ ଦଉଡ଼ିଲା ଜଙ୍ଗଲ ଆଡ଼େ । ସମସ୍ତଙ୍କ ମୁହଁରେ ସେଇ ବଣୁଆ କୁଁ କୁଁ ଶବ୍ଦ । ବକ୍ ମୁହଁରେ ବି ।

କିଛି ବର୍ଷପରେ ଲୋହିତ ଭାରତୀୟ ୟିହାନିମାନେ ଦେଖିଲେ, କେତେକ ବଣୁଆକୁକୁରଙ୍କ ଚେହେରାରେ ଗୋଟେ ପରିବର୍ତ୍ତନ ଘଟିଛି । କାହାକାହା ମୁଣ୍ଡ ଏବଂ ନାକ ପାଖରେ ମାଟିଆ ଚିହ୍ନର ଦାଗ ଦେଖାଯାଉଛି । କାହା କାହାର ଛାତି ପାଖରେ ଚେନାଏ ଧୋବ ଫର ଫର ଚିହ୍ନ ରହିଚି ।

ୟିହାତିମାନେ କୁହାକୁହି ହୁଅନ୍ତି ଯେ, ବଣୁଆକୁକୁର ଦଳକୁ ଏବେ କେତେ ବର୍ଷ ହେବ ଗୋଟାଏ ଭୂତକୁକୁର ବାଟ କଢ଼େଇ ନଉଛି । ବିଜୁଳି ପରି ତାର ଗତି । ଭାଲୁପରି ବିଶାଳ ଦେହ । ଆଖି ଦୁଇଟା ରଡ଼ନିଆଁପରି । ଗୋଟାଏ ଝାମ୍ପରେ ସେ ଦୁଇଟା ମଣିଷ ମାରିଦେଇପାରେ । ସବୁଠାରୁ ଭୟାନକ ଦିଗ ହେଉଛି, ଭୂତକୁକୁରଟା ଅସମ୍ଭବଭାବେ ଚାଲାକ୍ । ଯେତେ ଚେଷ୍ଟାକଲେ ବି ୟିହାତି ମାନଙ୍କର ଧନସମ୍ପତ୍ତି ସେ ନଷ୍ଟ କରିପକାଏ । ତାଙ୍କ କ୍ୟାମ୍ପରେ ପଶି ବେଳେବେଳେ ଲଣ୍ଡଭଣ୍ଡ କରେ । ସେମାନଙ୍କର କୁକୁରଗୁଡ଼ାଙ୍କୁ ତଣ୍ଟି କଣାକରି ମାରେ ଏବଂ ଶିକାରରେ ଯାଉଥିବା ୟିହାତିମାନଙ୍କର ଗଳାକାଟି ରକ୍ତ ପିଏ । ତା' ଗୋଡ଼ର ଥାବା କୁକୁର ପରି ନୁହେଁ; ଗୋଟାଏ ବାଘ ପରି ବଡ଼ ବଡ଼ । ସେ ଗୋଟାଏ ଭୂତଜାନୁଆର ।

ଉତ୍ତର ଦିଗର ଗୋଟାଏ ଉପତ୍ୟକା ବିଷୟରେ ମଧ୍ୟ ସେମାନେ କିମ୍ବଦନ୍ତୀଭଳି କୁହାକୁହି ହୁଅନ୍ତି । ସେ ଉପତ୍ୟକାରେ ଗୋଟେ ସଇତାନ୍ ବାସ କରୁଛି । ସେଠିକୁ ଯିଏ ଶିକାର କରିବାକୁ ଗଲା, ସିଏ ଫେରିବା ମୁସ୍କିଲ୍ । ସେ ଇଲକାର କଥା ପଡ଼ିଲେ ୟିହାତି ରମଣୀମାନେ ବେଶି ଶିହରି ଉଠନ୍ତି । ତାଙ୍କ ହାତରୁ ବାସନ ଖସିପଡ଼େ ।

ମାତ୍ର ସବୁ ବର୍ଷ ଗରମ ଦିନ ଆସିଲେ ସେ ଉପତ୍ୟକାକୁ ଗୋଟିଏ ଜୀବ ନିର୍ଭୟରେ ଯାଏ । ବିଶାଳ ବଣୁଆକୁକୁର ପରି ତା'ର ରୂପ କିନ୍ତୁ ସେ ବଣୁଆ କୁକୁର ନୁହେଁ । ଉପତ୍ୟକାକୁ ଯାଇ ସେ ଝରଣା କୂଳରେ ଚୁପ୍ ଚାପ୍ ହୋଇ ଅନେକ



Digitized by srujanika@gmail.com

ବେଳଯାଏଁ ବସେ । ଆଖିରୁ ଲୁହ ଗଡ଼ାଏ । ପାଣି ଭିତରକୁ ଚାହିଁରହେ । ରାତି ଅନ୍ଧାର ଘନେଇଲେ ସେଇଠି ବସି ବସି ଆକାଶକୁ ଅନେଇ, ନାକକୁ ଗୋଟେଇଦେଇ, ଗୋଟାଏ ଦୀର୍ଘ, କରୁଣ, ବିଳାପ ଧ୍ୱନି କରେ । ତା'ପରେ ଛାଗାଛାଡ଼ି ଚାଲିଆସେ ।

ଗଭୀର ଶୀତରାତିମାନଙ୍କରେ, ମହଳଣ ଜହ୍ନ ଆଲୁଅରେ କେହି କେହି ଲୋହିତ ଭାରତୀୟ, ଜଙ୍ଗଲରେ ବଣୁଆକୁକୁରଙ୍କ ମେଳରେ ଗୋଟାଏ ବିରାଟ ଭୂତକୁକୁରକୁ ଦେଖିଥିବାର ଦାବି କରନ୍ତି । ସେ ବିରାଟ ଜାନୁଆର୍‌ଟା ତାର ଏଡ଼େବଡ଼ ମୁଣ୍ଡକୁ ଉଠାଇ ଜହ୍ନକୁ ଚାହିଁ ଯେତେବେଳେ ବିଳାପ କରେ, ସେ ସ୍ୱରରେ ସାରା ଇଲାକା ଥରିଯାଏ । ତା'ର ଡାକରେ ଝାଡ଼ ଜଙ୍ଗଲ ବି ପ୍ରତ୍ୟୁତ୍ତର ଦିଏ ।



Digitized by srujanika@gmail.com